ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ

୧୯୭୩ ସଂଗୀତ ନାଟକ ଏକାଡେମୀ ଉତ୍ସବରେ ପରିବେଷିତ

# ମହାନାଟକ

(ଦୁଇ ଅଙ୍କ ବିଶିଷ୍ଟ ଏକ ମୁକ୍ତଧାରାର ନାଟକ)

ରମେଶ ପାଣିଗ୍ରାହୀ

ଓଁ

ଓଡ଼ିଶା ବୁକ୍ ଷ୍ଟୋର

# ମହାନାଟକ

ରଚନା

ରମେଶ ପାଣିଗ୍ରାହୀ





ପ୍ରକାଶକ :

ଶ୍ରୀ ବିଜୟ ଶଙ୍କର ପାତ୍ର

**ଓଡ଼ିଶା ବୁକ୍‌ଷ୍ଟୋର**

ବିନୋଦ ବିହାରୀ, କଟକ–୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୧

**ଦ୍ୱିତୀୟ ମୁଦ୍ରଣ : ୨୦୧୭**

ପ୍ରଚ୍ଛଦ : ବିଜୟ ପ୍ରଧାନ

ଛାପା ସଂଖ୍ୟା – ୫୦୦

ଅକ୍ଷର ସଜ୍ଜା : ସାଇରାମ ଡିଟିପି ସେଣ୍ଟର,

କଟକ–୭୫୩୦୦୨

ମୁଦ୍ରଣ : ମଜଦୁର ପ୍ରିଣ୍ଟର୍ସ, କଟକ–୨


**MAHANATAK**

*Written by :*

**Ramesh Panigrahi**


*Published by :*

Shree Bijoy Shankar Patra

**ORISSA BOOK STORE**

Binod Behari,Cuttack–753002

PRICE : ₹ 60/-

ISBN-81-7400-606-0

**2nd Edition :2017**

- 'ମହାନାଟକ' ପ୍ରଥମେ କୃଷ୍ଣ ଚନ୍ଦ୍ର ଗଜପତି ଭେଷଜ ମହାବିଦ୍ୟାଳୟ 'ବ୍ରହ୍ମପୁର'ଠାରେ ୧୯୭୨ ମସିହାରେ 'ପଞ୍ଚମସ୍ୱର' ନାମରେ ଅଭିନୀତ ହୋଇଥିଲା ଏକାଦିକ୍ରମେ ଚାରିଦିନ ଧରି । ନିର୍ଦ୍ଦେଶନା : ଡା. ସୁରେନ୍ଦ୍ର ପ୍ରସାଦ ଦାସ ।
- ସଂଗୀତ ନାଟକ ଏକାଡେମୀର ରାଉରକେଲା ଉତ୍ସବରେ ଏହା 'ମହାନାଟକ' ନାମରେ ଏବଂ ଠିକ୍ ତା'ପରେ ବ୍ରହ୍ମପୁର ଗଞ୍ଜାମ କଳାପରିଷଦଠାରେ ଏହି ନାଟକ ଅଭିନୀତ ହୋଇଥିଲା ୧୮/୭/୧୯୭୩ରେ ।

ଅଭିନୟ କରିଥିଲେ :

ନିର୍ଦ୍ଦେଶନା : ଡା. ସୁରେନ୍ଦ୍ର ପ୍ରସାଦ ଦାସ
ବଭ୍ରୁବାହୁ : ଡ. ସୁବ୍ରତ ଆଚାର୍ଯ୍ୟ
ବ୍ରହ୍ମଦତ୍ତ : ଡ. ସୁରେନ୍ଦ୍ର ପ୍ରସାଦ ଦାସ
ଶୀଳଭଦ୍ର : ଶ୍ରୀ ଭାସ୍କର ଚନ୍ଦ୍ର ପାତ୍ର
ବିଦୂଷକ ୧ : ଶ୍ରୀ ବାଳକୃଷ୍ଣ ଦାସ
ବିଦୂଷକ ୨ : ଡ. ପୂର୍ଣ୍ଣଚନ୍ଦ୍ର ମିଶ୍ର
କଳିଙ୍ଗ ରାଜକୁମାର : ଶ୍ରୀ ତ୍ରିନାଥ ଦାଶ
ଗୌଡ଼ ରାଜକୁମାର : ଶ୍ରୀ ଅଚ୍ୟୁତନାଥ ପ୍ରହରାଜ
କର୍ଣ୍ଣାଟ ରାଜକୁମାର : ଶ୍ରୀ ଶ୍ୟାମସୁନ୍ଦର ଶତପଥୀ
ବାନିକ : ଡ. ଧରଣୀଧର ନାୟକ
ଅବନ୍ତୀ ସାଧକ : ଅଧ୍ୟାପକ ସୁରେନ୍ଦ୍ର କୁମାର ମିଶ୍ର (ଚଳଚ୍ଚିତ୍ରର ସୁରେଶ ମିଶ୍ର)
ଶ୍ୱେତାଙ୍ଗ ସୌଦାଗର : ନାଟ୍ୟକାର ଡା. ବିଜୟ କୁମାର ମିଶ୍ର
ମୃତବ୍ୟକ୍ତି : ଅଧ୍ୟାପକ ପ୍ରମୋଦ ଚନ୍ଦ୍ର ଦାସ
କେତକୀଗନ୍ଧା : କୁମାରୀ ଅସୀମା ରାୟ
ପ୍ରଥମ ସଖୀ : କୁମାରୀ ଚନ୍ଦନା ରାୟ
ଦ୍ୱିତୀୟ ସଖୀ : ଶ୍ରୀମତୀ ଲତା ଦାସ
ସଙ୍ଗୀତ ପରିଚାଳନା : ପ୍ରଫେସର ଡ. ଶ୍ରୀକାନ୍ତ ଦାସ
ସହଯୋଗୀ : ବେବି, ଅଶୋକ ଇତ୍ୟାଦି ।

ଆଲୋକ/ମଞ୍ଚ :

କଳ୍ପନା : କେଦାର ଆପ୍ତା
ମଞ୍ଚ ପରିଚାଳନା : ଶ୍ରୀ ପ୍ରଦୀପ କୁମାର ପାଢ଼ୀ (ଖଲି)
ଶ୍ରୀ ଅମ୍ବିକା ପ୍ରସାଦ ମିଶ୍ର

• ୧୯୭୫ରେ 'ମହାନାଟକ' ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀ ଠାରେ ନାଟ୍ୟ ସଂସଦ ତରଫରୁ ଅଭିନୀତ ହୋଇଥିଲା ।

ନିର୍ଦ୍ଦେଶନା : ଅଧ୍ୟାପକ ରମେଶ ପ୍ରସାଦ ପାଣିଗ୍ରାହୀ

• ୧୯୭୮ ମସିହାରେ 'ଭଞ୍ଜବିହାର' ନାଟ୍ୟସଂସଦ ଆନୁକୂଲ୍ୟରେ (୭।୪।୧୯୭୮)

| | |
|---|---|
| ପ୍ରଯୋଜନା | : ଶ୍ରୀ ମନ୍ମଥ ପାଢ଼ୀ |
| ନିର୍ଦ୍ଦେଶନା | : ଶ୍ରୀ ଭାସ୍କର ଚନ୍ଦ୍ର ପାତ୍ର |
| ମଞ୍ଚ | : ଶ୍ରୀ ବିପିନ ବିହାରୀ ସାହୁ |
| ସଙ୍ଗୀତ | : ଅଧ୍ୟାପକ ଗୁରୁଚରଣ ପାତ୍ର |
| ବଜ୍ରବାହୁ | : ଅଜିତ୍ ପଟ୍ଟନାୟକ |
| ବୃହନ୍ନଳା | : ସୁରେନ୍ଦ୍ର ନାୟକ |
| ଶୀଳଭଦ୍ର | : ଲଲାଟେନ୍ଦୁ ପାଢ଼ୀ |
| ବିଦୂଷକ ୧ | : କୁମୁଦକାନ୍ତ ରଥ |
| ବିଦୂଷକ ୨ | : କୈଳାସ ଚନ୍ଦ୍ର ରାଉତ |
| କ. ରାଜକୁମାର | : ଶଚ୍ଚିଦାନନ୍ଦ ଶତପଥୀ |
| କର୍ଣ୍ଣାଟ ଜମିଦାର | : ପ୍ରଦୀପ କୁମାର ବେହେରା |
| ଗୌଡ଼ ଜମିଦାର | : ପୂର୍ଣ୍ଣଚନ୍ଦ୍ର ସେଠୀ |
| ବାରିକ | : ଉଦୟନାଥ ରାଉତ |
| ମୃତବ୍ୟକ୍ତି | : ସୁଶାନ୍ତ କୁମାର ପଟ୍ଟନାୟକ |
| ଦୂତ | : ବିଦ୍ୟାସେନ ପଟ୍ଟନାୟକ |
| ଶ୍ୱେତାଙ୍ଗ ସୌଦାଗର | : ରାମ ମୂର୍ତ୍ତି |
| ଅବନ୍ତୀ ସାଧକ | : ଶିବ ପ୍ରସାଦ ସାହୁ |
| କେତକୀଗନ୍ଧା | : କୁମାରୀ ନିରୂପମା ରାଉତରାୟ |
| ପ୍ରଥମ ସଖୀ | : କୁମାରୀ ଗୌରୀ ପାତ୍ର |
| ଦ୍ୱିତୀୟ ସଖୀ | : କୁମାରୀ ମଞ୍ଜୁଶ୍ରୀ ସିଂ |
| କଣ୍ଠ ଶିଳ୍ପୀ | : କୁମାରୀ ବିଜୟଲକ୍ଷ୍ମୀ ପାତ୍ର |

• ୧୯୭୯ ମସିହାରେ ଛତ୍ରପୁର ବିଜ୍ଞାନ ମହାବିଦ୍ୟାଳୟଠାରେ ଅଭିନୀତ

| | |
|---|---|
| ନିର୍ଦ୍ଦେଶନା | : ଶ୍ରୀ ଭାସ୍କର ଚନ୍ଦ୍ର ପାତ୍ର |
| ମଞ୍ଚ | : ଶ୍ରୀ ବିପିନ ବିହାରୀ ସାହୁ |
| ପରିଚାଳନା | : ଅଧ୍ୟାପକ ନୃସିଂହ ମହାପାତ୍ର |



ମୋର ଦୁର୍ଭାଗ୍ୟ, ୧୯୭୨ରେ ଲେଖା ଏଇ ନାଟକଟି ଏ ପର୍ଯ୍ୟନ୍ତ ପ୍ରକାଶ ପାଇ ନ ଥିଲା । ଏଇ ଅବସରରେ ମୁଁ ପ୍ରକାଶକ ଶ୍ରୀ ଗୋବିନ୍ଦ ଚରଣ ପାତ୍ରଙ୍କ ଉଦାରତା ଆଗରେ ଋଣୀ ।

'ମହାନାଟକ' ଭାରତୀୟ ରାଜନୈତିକ ଓ ସାମାଜିକ ଇତିହାସର ଏକ ସଂଧିକ୍ଷଣରେ ଲେଖା ହୋଇଥିଲା । ଏହାର ଗଦ୍ୟ ଶୈଳୀ, ବ୍ୟଞ୍ଜନା, କଳ୍ପନାପ୍ରବଣତା (fantasy), ହାସ୍ୟରସ, ଗୀତିମୟତା ଓ allegorical ପ୍ରକାଶଭଙ୍ଗୀ ଏ ପର୍ଯ୍ୟନ୍ତ ଓଡ଼ିଆ ନାଟକରେ ପରୀକ୍ଷା କରାଯାଇ ନାହିଁ । ଶ୍ରୀ ବିଶ୍ୱଜିତ୍ ଦାସଙ୍କ 'ସମ୍ରାଟ୍'ର ପ୍ରଯୋଜନା କାଳରେ ଆଲ୍‌ବର୍-କାମ୍ୟୁଙ୍କୁ ଚାଲେଞ୍ଜ କରାଯାଇ ଏକ ସଂପୂର୍ଣ୍ଣ ଓଡ଼ିଆ ନାଟକ ଲେଖିବା ପାଇଁ ମୋର ଇଚ୍ଛା ହୋଇଥିଲା । 'ମହାନାଟକ' ପରେ ପରେ ଶ୍ରୀ କୁଞ୍ଜରାୟ 'ବିଦାୟ ବକ୍ରାଦିତ୍ୟ' ଅନୁବାଦ ନାଟକ (Ionescoଙ୍କର Exit the King) ମଞ୍ଚସ୍ଥ କରିଥିଲେ 'ସଙ୍କେତ' ଆନୁକୂଲ୍ୟରେ । ତା'ପରେ ୧୯୮୦ ଶେଷ ଆଡ଼କୁ ନାଟ୍ୟକାର ବିଜୟ ମିଶ୍ରଙ୍କର 'ଜଣେ ରାଜା ଥିଲେ' ଓ ଗିରିଶ୍ କର୍ନାଡ଼ଙ୍କର 'ତୁଗ୍‌ଲକ୍' ଏବଂ ୧୯୭୯ ମସିହାରେ ଡା. ସୁବୋଧ ପଟ୍ଟନାୟକଙ୍କର 'ଏଥୁ ଅନ୍ତେ' ପରିବେଷିତ ହେଲା । 'ମହାନାଟକ' ଲେଖା ହେବାର ତିନି ବର୍ଷ ପରେ ବିଜୟ ତେନ୍ଦୁଲ୍‌କରଙ୍କର (The Encounter in the Umbugland' ପ୍ରକାଶ ପାଇଲା ଏବଂ ସପ୍ତମ ଦଶକର ମଧ୍ୟଭାଗରେ 'ବକ୍‌ରୀ', 'ସିଂହାସନ ଖାଲୀ ହେ' ପ୍ରଭୃତି ଭାରତୀୟ ନାଟକ ପ୍ରାୟ ଏହି ପ୍ରକାର ବିଷୟବସ୍ତୁ ଉପରେ ଲେଖା ହୋଇଛି ।

'ମହାନାଟକ'ର ନିର୍ଦ୍ଦେଶନା ଓ ପରିବେଷଣ ଶୈଳୀ ଓଡ଼ିଆ ନାଟକ କ୍ଷେତ୍ରରେ ଅନନ୍ୟ । ସପ୍ତମ ଦଶକର ଆରମ୍ଭରେ ଓଡ଼ିଶାରେ 'ଅରଣ୍ୟଫସଲ' ଓ ତଥାକଥିତ ଉଦ୍ଭଟ ନାଟକ ପାଇଁ ଗୋଟିଏ ଦୁଇଟି ନିର୍ଦ୍ଦିଷ୍ଟ ଗୋଷ୍ଠୀ ଦ୍ୱାରା ବୌଦ୍ଧିକ ପ୍ରଚାର ଆରମ୍ଭ ହୋଇଥିଲା ଏବଂ ନାଟକ ସହିତ ସଂପୃକ୍ତ ନ ଥିବା ସମାଲୋଚକମାନେ କେବଳ 'ସୃଜନୀ' ଓ 'ସଙ୍କେତ' ଅନୁଷ୍ଠାନମାନଙ୍କର ପ୍ରଚାର କରୁଥିଲେ । ତେଣୁ ଏ ନାଟକର ନିର୍ଦ୍ଦେଶକ ଡା. ସୁରେନ୍ଦ୍ର ପ୍ରସାଦ ଦାସ ଓ ଅନୁଷ୍ଠାନ 'ଗଞ୍ଜାମ କଳା ପରିଷଦ'କୁ କେହି ମନେ ରଖି ନାହାନ୍ତି । ଯେପରିକି ଏହି ନାଟକକୁ କିମ୍ବା ମତେ ।

'ମହାନାଟକ' ଏକ ମୁକ୍ତଧାରାର ନାଟକ । ଏଥିରେ ସମସାମୟିକ ସମସ୍ତ ନାଟ୍ୟଶୈଳୀ ଓ ଜୀବନ ଦର୍ଶନକୁ ଉପେକ୍ଷା କରାଯାଇ ଲୋକନାଟକ ଶୈଳୀର ପରୀକ୍ଷା କରାଯାଇଛି । 'ଦାସକାଠିଆ' ମାଧ୍ୟମରେ ଏକ କଳ୍ପନାପ୍ରସୂତ କ୍ଲାସିକାଲ୍ ଥିମ୍‌କୁ ପରିବେଷଣ କରାଯିବା ସେ ସମୟ ପାଇଁ ସଂପୂର୍ଣ୍ଣ ନୂତନ । ଅଥଚ ଏହାର ତିନିବର୍ଷ ପରେ 'କାଠଘୋଡ଼ା' ନାଟକରେ ଯାତ୍ରା ଶୈଳୀର ଅଭିନୟ ହୋଇଥିବା ଯୋଗୁଁ ବହୁ ସମାଲୋଚକ ପ୍ରଶଂସାରେ ଶତମୁଖ ହୋଇ ଉଠିଲେ ଓ ଖବର୍ କାଗଜ ଓ ପ୍ରବନ୍ଧମାନଙ୍କର ପୃଷ୍ଠାଗୁଡ଼ିକୁ ଅଳଙ୍କୃତ କରି ନିଜେ ଧନ୍ୟ ହେଲେ– ଅନ୍ୟମାନଙ୍କୁ ଧନ୍ୟ କରାଇଲେ । ଓଡ଼ିଶାରେ ନାଟ୍ୟ ସମାଲୋଚନା ହେଉ ନ ଥିବାରୁ ଅନଭିଜ୍ଞ ସାହିତ୍ୟିକମାନେ ତିନିତୁଣ୍ଡ ହୋଇ ଛେଳିକୁ କୁକୁର ବୋଲି ପ୍ରମାଣିତ କରୁଛନ୍ତି ଏବଂ ସତ୍ୟ ହଜି ଯାଉଛି ପ୍ରଚାରର କୋଳାହଳ ଭିତରେ ।

ହସ୍ତିନା ନଗ୍ରରେ ସବୁ ସମ୍ଭବ ।

ସେଠାରେ ହସ୍ତ (କାର୍ଯ୍ୟ) ଓ ପଦ (ଗତି)ମାନଙ୍କୁ ଛେଦନ କରାଯାଉଅଛି । ଦେଶରେ ନା କର୍ମ ଅଛି ନା ଗତି । ତଥାପି ସମ୍ରାଟ୍ ବଜ୍ରବାହୁ ଚାହାନ୍ତି ଏହି ପରମ୍ପରାରେ ଗତି ଓ କର୍ମରେ କୌଣସି ଉଚ୍ଛୃଙ୍ଖଳତା ରହିପାରିବ ନାହିଁ । ଶୀଳଭଦ୍ରଙ୍କର ପଚମାନ ସ୍ଥିରତା ବିପକ୍ଷରେ ବୃହନ୍ନଦତ୍ତ ଶେଷକୁ ବିପ୍ଳବ କରିବା ପାଇଁ ବାଧ ହୋଇଅଛନ୍ତି । ଅଥଚ ବଜ୍ରବାହୁ କେଉଁଠି ପ୍ରଜାମାନଙ୍କ ପ୍ରତି ବୈର ଭାବ ପୋଷଣ କରି ନାହାନ୍ତି । ସେ ଜଣେ ଉଦ୍ଭଟ ଶାସକ । ବାସ୍ତବତା ଓ ବାସ୍ତବ ସମସ୍ୟାଠାରୁ ଯୋଜନ ଯୋଜନ ଦୂରରେ ଥାଇ ସେ ଶାସନ କାର୍ଯ୍ୟ ସଂପାଦନ କରୁଅଛନ୍ତି । ତାଙ୍କର ନିଜ କ୍ଷମତା ସଂପର୍କରେ ଏକ ଦୁର୍ନିବାର ମୋହ । ଅଥଚ ରାୟ ଦେବା ଶୈଳୀଟି ଅଦ୍ଭୁତ । ମୃତ୍ତିକା କଳସୀରେ ସାତୋଟି ଗୋଡ଼ି ପକାଇ ସେ ଗଧ ଭଳି ହସନ୍ତି । ସମସ୍ୟାଟି ହୁଏତ ବଜ୍ରବାହୁଙ୍କ ନପୁଂସକତାରେ ନିହିତ । ସେ ସୃଷ୍ଟିଶୀଳ ନୁହନ୍ତି ।

ସୃଷ୍ଟି କରିବା ପାଇଁ ଅକ୍ଷମ ପ୍ରତ୍ୟେକ ମଣିଷ ନିଜ ପାଇଁ ଗୋଟିଏ ଗୋଟିଏ ମୁଖା (Mask) ତିଆରି କରିଥାନ୍ତି । ହଠାତ୍ ଦିନେ ସକାଳେ, ସିନ୍ଦୂରା ଫାଟିବା ପୂର୍ବରୁ ଜଣେ ବୃହନ୍ନଦତ୍ତ ଆସି କ୍ଷମତା ଓ ପ୍ରତାରଣାର ସେଇ ମୃତ୍ତିକାଭାଣ୍ଡଟିକୁ ଭାଙ୍ଗିଦିଏ ।

(ବୃହନ୍ନଦତ୍ତ କଣ ନିରବଧି କାଳ ? ଦା'ଟିଏ ଧରି ଫସଲ କାଟୁଥିବା ସମୟ ? କିଏ ଜାଣେ ?)

କିନ୍ତୁ ମୁଁ ଏଇତକ ନିଶ୍ଚିତ ଭାବେ ଜାଣିଛି ଯେ ବୃହନ୍ନଳା ଆସିଲେ ସବୁ କ୍ଷମତାର ହାଣ୍ଡି ଫାଟିଯିବ । ଭାସିଯିବ ଜ୍ଞାନପୀଠ, ଜାତୀୟ ପ୍ରତିଷ୍ଠା ଏବଂ ନିଜକୁ ଅର୍ଦ୍ଧ–ଭଗବାନ୍ ବୋଲି ମନେ କରୁଥିବା ଅହମିକାର ପ୍ରତିମା । ଏ ପର୍ଯ୍ୟନ୍ତ ସମୁଦ୍ର ମନ୍ଥନ ଆରମ୍ଭ ହୋଇ ନାହିଁ । ଦିନେ ନା ଦିନେ କିଏ ଜଣେ ବୃହନ୍ନଳା ଆସିବ । ସେ ସକାଳ ଏ ପର୍ଯ୍ୟନ୍ତ ଆସିନି । ସବୁ ମୁଖା ଦିନେ ଖୋଲିଯିବ । ସେ ସମୟ ଏ ପର୍ଯ୍ୟନ୍ତ ଆସିନି ।

ତେଣୁ ଏହାର ନାମ ମହାନାଟକ ।

ଏହା କୌଣସି ନିର୍ଦ୍ଦିଷ୍ଟ ଶାସକ ବା system ପ୍ରତି ଆକ୍ଷେପ ନୁହେଁ ।

ଏହା କୌଣସି ନିର୍ଦ୍ଦିଷ୍ଟ ସମୟର ଫଟୋଗ୍ରାଫ୍ ନୁହେଁ ।

କୌଣସି ନିର୍ଦ୍ଦିଷ୍ଟ କାଳର ବନ୍ଦୀଶାଳାରେ ଏହି ନାଟକର ଚରିତ୍ର ଓ ଘଟଣାମାନ ଛଟପଟ ହେଉ ନାହାନ୍ତି ।

ଇତିହାସର ଶବ୍ଦହୀନ ଶୋଭାଯାତ୍ରା ଚାଲିଛି । ସିଂହାସନମାନେ ଏହିଭଳି ଭାଙ୍ଗୁଛନ୍ତି । ଅର୍ଦ୍ଧଭଗବାନ୍ ପ୍ରତିମାମାନେ ଏହିଭଳି ଓହ୍ଲାଇ ଆସିବା ପାଇଁ ବାଧ୍ୟ ।

A spectre is haunting the world– the spectre of revolution. It hunts the corridors of the Kremlin no less than the country clubs of Connecticut and Virginia. It stalks through both Berlines, as through Bengalee villages and the banana plantations of Guatemala. It is the upheaval of an affronted humanity, searching for new social relationships.

–Ronald Segal 'The Struggle Against History', (Penguin, 1971) P.9.

ରମେଶ ପାଣିଗ୍ରାହୀ

# ପ୍ରଥମ ଅଙ୍କ

[ଦାସକାଠି ଶବ୍ଦ ଭିତରେ ପରଦା ଖୋଲିଲା ଏବଂ ପ୍ରବେଶ କଲେ ଦୁଇଜଣ, ଦାସକାଠି ବଜାଇ ନାଚି ନାଚି । ତା'ପରେ ନିମ୍ନୋକ୍ତ ଗୀତଟି ସେମାନେ ସୁବିଧା ଦେଖି ନିଜ ନିଜ ଭିତରେ ବାଣ୍ଟି ଗାଇବେ ଓ ନାଚିବେ]

ଦାସକାଠି ଗୀତ ଭାଇ ଆରମ୍ଭ ହୋଇଲା
ତୁ ଗାୟକ ମୁଁ ପାଳିଆ
ନାଇଁ, ନାଇଁ,
ମୁଁ ଗାୟକ ତୁ ପାଳିଆ ଯିଏ ଯାହା ହେଲା ।
ସଭାଜନେ ଆସିଛନ୍ତି ବଡ଼ ଆଶା କରି
ଆରମ୍ଭ କର ପୁରାଣ ନମସ୍କାର କରି ।
ହେ ଜୟରାମ ନବୀନ ସୁନ୍ଦର ଶ୍ୟାମ ହେ
ଆଜି ପାଇଁ ଏ ପୁରାଣ କରୁଛି ବର୍ଣ୍ଣନ୍ ହେ ।

ପ୍ରଥମ ।। ଆଜି କୋଉ ପୁରାଣ ?

ଦ୍ୱିତୀୟ ।। ବଜ୍ରବାହୁ ପୁରାଣ ।

ପ୍ରଥମ ।। ବଜ୍ରବାହୁ ପୁରାଣ ? ହଇଏ ସାଙ୍ଗ ! ଇଏ ବଜ୍ରବାହୁ ପୁରାଣ କିସ ହେ ? ନାକ ଉଠିବା ଦିନରୁ ତ ଆମେ ଏମିତିକା ପୁରାଣ ଶୁଣିନୁ ?

ଦ୍ୱିତୀୟ ।। ଯଦି ଶୁଣିବ ତା' ହେଲେ ଆଉ ହଳେ କାନ ଲଗେଇ ଶୁଣ ।

ପ୍ରଥମ ।। କ'ଣ ଶୁଣିବି ?

(ଗୀତ)

ହସ୍ତିନା ନାମେ ନଗର ରାଜା ବଜ୍ରବାହୁ
ମହିମା କୀରତି ତାଙ୍କ କି କହିବି ଆଉ ।

ତାଙ୍କ ଶାସନରେ ପ୍ରଜା ଅତି ଗଦଗଦ
ରାତି ହେଲେ ପିଇବାକୁ ମିଳୁ ଅଛି ମଦ ।
ହସଟି ତାଙ୍କର ଯେହ୍ନେ ବୋବାଉଛି ଗଧ
ସବୁ କାର୍ଯ୍ୟ ସୁରୁଖୁରୁ ନାହିଁ ପରମାଦ ।
ଆଜି ତାଙ୍କ ଶାସନର ପଚିଶି ବରଷ
ରାଜାଙ୍କର ମନ ତେଣୁ ଅତି ହସ ହସ ।
ଏଣିକି ଶାସନ ହବ ପ୍ରମୋଦ ଶାଳାରେ
ରାତି ହେଲେ ରାଜକାର୍ଯ୍ୟ, ଶୋଇବେ ଦିନରେ ।
କ୍ଷିରୀ ପିଠା ଭାସୁଅଛି ନଳ୍ପରେ ନଳାରେ
ରସଗୋଲାମାନଙ୍କର ପାହାଡ଼ ରାସ୍ତାରେ ।
ଦେଶସାରା କିଏ ଆଉ ନାହାନ୍ତି ବେକାର
ତାଙ୍କ ଶାସନରେ ନାହିଁ ମୃତ୍ୟୁ ଅନାହାର ।
ଏମନ୍ତ ସମୟେ ଆଜି ରଜତ ଜୟନ୍ତୀ
ନୃତ୍ୟ–ଗୀତ, ସଙ୍ଗୀତରେ ପ୍ରଜାଗଣ ମାତି
ଅତି ଆନନ୍ଦରେ କାଳ କରନ୍ତି ଯାପନ
ଚାଲ ଭାଇ ଦେଖିବାକୁ ଯିବା ସେହି ସ୍ଥାନ ।

ପ୍ରଥମ ।। ଚାଲ ! ବର୍ତ୍ତମାନ ଯିବା । ମହାରାଜଙ୍କ ସାଙ୍ଗରେ ଦେଖା ହବ ତ ?

ଦ୍ୱିତୀୟ ।। ଆଜି ପରା ରଜତ ଜୟନ୍ତୀ ! ସେଇଠିକି ଗଲେ ଅନେକ ଲାଭ ।

ପ୍ରଥମ ।। କ'ଣ ଲାଭ ?

ଦ୍ୱିତୀୟ ।। ଆମେ ଦୁହେଁ ଆଉ ତ କିଛି କରିପାରିବା ନାହିଁ, ଅନ୍ତତଃ ବିଦୂଷକ ହୋଇ ପ୍ରମୋଦଶାଳାରେ ବସିଯିବା ।

ପ୍ରଥମ ।। ତା'ପରେ ?

ଦ୍ୱିତୀୟ ।। ତା'ପରେ ଦେଖିବ, ରାଜାଙ୍କ ପାଖଲୋକ ହେଇଯିବା ।

ପ୍ରଥମ ।। ଏମିତିକା କଥା ? ତା'ହେଲେ ଚାଲ । ତେଲ ମାରିମାରି ତ ମୋ' ହାତ ଚିକଣ ।

(ପ୍ରଥମ ଓ ଦ୍ୱିତୀୟ ଦାସକାଠିଆମାନେ ବର୍ତ୍ତମାନ ବିଦୂଷକ ନଂ ୧ ଓ ବିଦୂଷକ ନଂ ୨ ହୋଇ ରାଜା ବଜ୍ରବାହୁଙ୍କ ପ୍ରମୋଦଶାଳାରେ ପହଞ୍ଚିବେ । ମଞ୍ଚ ଅନ୍ଧକାର ହେବ ।)

ଆଲୋକ ଜଳିଲା ବେଳକୁ ଦେଖାଗଲା —

(ହସ୍ତିନାପୁର ସମ୍ରାଟ ବଜ୍ରବାହୁଙ୍କର ପ୍ରମୋଦଶାଳା, ମଧ୍ୟଭାଗରେ ବେଦୀ । ବେଦୀ ଉପରେ ଅସଂଖ୍ୟ

ଗଜଦନ୍ତଖଚିତ ସୁଖାସନ । ପୃଷ୍ଠଦେଶରେ ବିରାଟ ରାଜପ୍ରାସାଦର କିୟଦଂଶ ଓ ଅଙ୍ଗନ । ଦ୍ୱାର ଓ ସ୍ତମ୍ଭମାନ ଚିତ୍ରିତ ଓ ସୁସଜ୍ଜିତ । ପ୍ରତି ଦ୍ୱାର ଓ ସ୍ତମ୍ଭ ପାଖରେ ପ୍ରତିହାରୀ ଦଣ୍ଡାୟମାନ । ପ୍ରମୋଦଶାଳା ହସ୍ତିନା ନଗ୍ରରେ ପାଳିତ ହେଉଥିବା ରଜତ ଜୟନ୍ତୀ ପାଇଁ ସୁସଜ୍ଜିତ । ମଞ୍ଚ ଆଲୋକିତ ହେଲା ବେଳକୁ ଜଣେ/ଦୁଇ... ଚାରି... ଜଣ ନର୍ତ୍ତକୀ ନୃତ୍ୟରତା । ଟିକିଏ ପଛରେ ବିଦୂଷକ ନଂ ୧ ଓ ବିଦୂଷକ ନଂ ୨ କ୍ରୀଡ଼ାରତ । କ୍ରମଶଃ ନୃତ୍ୟ ଶେଷ ହେଲା ଓ ନର୍ତ୍ତକୀମାନେ ପୃଷ୍ଠଦ୍ୱାର ଦେଇ ଅଦୃଶ୍ୟ ହୋଇଗଲେ । ତା'ପରେ.....)

ବିଦୂଷକ ନଂ ଏକ ।। ଆଃ ଆଃ କି ନୃତ୍ୟ !

ବିଦୂଷକ ନଂ ଦୁଇ ।। କି ସଙ୍ଗୀତ !

ବିଦୂଷକ ନଂ ଏକ ।। କି ତାଳ !

ବିଦୂଷକ ନଂ ଦୁଇ ।। କି ଲୟ !

ବିଦୂଷକ ନଂ ଏକ ।। କି ନୂପୁର !

ବିଦୂଷକ ନଂ ଦୁଇ ।। କି ନିକ୍ୱଣ !

ବିଦୂଷକ ନଂ ଏକ ।। ହେଲେ ସଖା, ଏ ସଙ୍ଗୀତର ଅର୍ଥ ତ ମୁଁ ବୁଝିପାରୁ ନାହିଁ ?

ବିଦୂଷକ ନଂ ଦୁଇ ।। ବୁଝିବା କ'ଣ ଦରକାର ଯେ ! ଖାଲି ଉପଭୋଗ କଲେ ହେଲା ।

ବିଦୂଷକ ନଂ ଏକ ।। ଆଚ୍ଛା ସଖା, ସଙ୍ଗୀତ ଏକ ଗାନ୍ଧର୍ବ ବିଦ୍ୟା ପରା ?

ବିଦୂଷକ ନଂ ଦୁଇ ।। ରାଜା ବଜ୍ରବାହୁଙ୍କର ଶାସନରେ ଗାନ୍ଧର୍ବ ବିଦ୍ୟା ବୋଲି କିଛି ନାହିଁ । ସବୁ ବିଦ୍ୟା ରାଜା ବଜ୍ରବାହୁଙ୍କର ।

ବିଦୂଷକ ନଂ ଏକ ।। ସମ୍ରାଟ କ'ଣ– ଅସୁସ୍ଥ ?

ବିଦୂଷକ ନଂ ଦୁଇ ।। ଅସୁସ୍ଥ କି ନା ଆମ୍ଭେ ଜାଣି ନାହୁଁ– କିନ୍ତୁ ନିଶ୍ଚୟ ପ୍ରକୃତିସ୍ଥ ନୁହନ୍ତି ।

ବିଦୂଷକ ନଂ ଏକ ।। ଆଜି ତାଙ୍କ ଶାସନର ପଚିଶ ବର୍ଷ ପୂରିଲା ।

ବିଦୂଷକ ନଂ ଦୁଇ ।। ରଜତ ଉତ୍ସବ ସଖା ! ଆଜି କ'ଣ ସମ୍ରାଟ ପ୍ରକୃତିସ୍ଥ ରହି ପାରନ୍ତି ?

ବିଦୂଷକ ନଂ ଏକ ।। ସମ୍ରାଟ ବଜ୍ରବାହୁଙ୍କ ପାଇଁ ପ୍ରତିଦିନ ତ ରଜତ ଉତ୍ସବ !

ବିଦୂଷକ ନଂ ଦୁଇ ।। ଏବଂ ପ୍ରତିଦିନ ସେ ଅପ୍ରକୃତିସ୍ଥ ।
ବିଦୂଷକ ନଂ ଏକ ।। ତା'ହେଲେ ସମ୍ରାଟ କ'ଣ ନିଶାସକ୍ତ ?
ବିଦୂଷକ ନଂ ଦୁଇ ।। ବିନା ମାଦକରେ ବି ସେ ମୋହିତ ।
ବିଦୂଷକ ନଂ ଏକ ।। (ଦୂରରୁ ଲକ୍ଷ୍ୟ କଲେ)
ଏଇତ ସମ୍ରାଟ ବଜ୍ରବାହୁ ଆସୁଛନ୍ତି !
ବିଦୂଷକ ନଂ ଦୁଇ ।। (ମୁଗ୍ଧ ହେଲାଭଳି) ଆହା ହା... କି ବପୁ, କି ଶରୀର... କି ବୁଦ୍ଧି !!
ବିଦୂଷକ ନଂ ଏକ ।। (ସେ ମଧ୍ୟ ମୁଗ୍ଧ ହେଲେ ଏବଂ ପ୍ରଶଂସା ଗାଇବାରେ ବିଦୂଷକ ନଂ ଦୁଇଙ୍କ ସହିତ ପ୍ରତିଯୋଗିତା କରି)
କି ଚାଲି, କି ଠାଣି, କି ଛଟା !!
ବିଦୂଷକ ନଂ ଦୁଇ ।। କି ବସ୍ତ୍ର, କି ଉତ୍ତରୀ, କି ମୁକୁଟ !!
ବିଦୂଷକ ନଂ ଏକ ।। କି କଙ୍କଣ, କି କୁଣ୍ଡଳ, କି ମେଖଳା !!
ବିଦୂଷକ ନଂ ଦୁଇ ।। ଆହା...ହା ହା ହା....
[ଅପୂର୍ବ ଛଟାରେ ସମ୍ରାଟ ବଜ୍ରବାହୁ ପ୍ରବେଶ କଲେ । ଦୁଇପଟେ ଛତ୍ର, ଚାମରଧାରୀ ଅମାତ୍ୟ ବ୍ରହ୍ମଦତ୍ତ ଓ ତାଙ୍କ ପଛେ ପଛେ ଗୋଟିଏ ଚିତ୍ରିତ ମୃତ୍ତିକାଭାଣ୍ଡ ଏବଂ ଭାଣ୍ଡଟି ରଖିବା ପାଇଁ ଏକ ଚିତ୍ରିତ କାଷ୍ଠାସନ ଧାରଣ ପୂର୍ବକ ଜଣେ ଭୃତ୍ୟ ।।
ଜଣେ ଭୃତ୍ୟ କାଷ୍ଠାସନ ଉପରେ ଜଳପୂର୍ଣ୍ଣ ମୃର୍ତ୍ତିକା ଭାଣ୍ଡଟି ରଖିଲେ ।]
ବିଦୂଷକ ନଂ ଏକ ।। ଜୟ ରାଜା ମହାମହୋପାଧ୍ୟାୟ ବୁଦ୍ଧିଜ୍ଞାନ ଲାବଣ୍ୟ ପରିପୂର୍ଣ୍ଣ ତ୍ରିଭଙ୍ଗୀଠାମ ସତଶ୍ରୀ ନ୍ୟାୟସିନ୍ଧୁ ଶ୍ରୀ ଶ୍ରୀ ଶ୍ରୀ ଶହେ ଆଠ ଶ୍ରୀ ବଜ୍ରବାହୁଙ୍କର ଜୟ ହେଉ ।
ବିଦୂଷକ ନଂ ଦୁଇ ।। (ପ୍ରତିଯୋଗିତା ଭଳି) ଜୟ ରାଜାଧିରାଜ ବୀର ପ୍ରତାପୀ ପରାକ୍ରମୀ କୋଟି ବର୍ଗେଶ୍ୱର ଭାରତେଧିଶ୍ୱର ହସ୍ତିନା ପୁରେଶ୍ୱର ସମ୍ରାଟ ବଜ୍ରବାହୁଙ୍କର ଜୟ ହେଉ ।
[ସମ୍ରାଟ ବଜ୍ରବାହୁ ପ୍ରୀତ ହେଲେ । ମୃତ୍ତିକା ଭାଣ୍ଡରେ ନିଜ ରୂପର ପ୍ରତିଫଳନକୁ ଦେଖି ଆନନ୍ଦରେ ହସିଲେ]
ବଜ୍ରବାହୁ ।। ହାଃ ହାଃ ହାଃ ହାଃ ହାଃ—ମୁଁ ଏ ପୃଥିବୀର ସବୁଠାରୁ ସୁନ୍ଦର ପୁରୁଷ ।

ସମସ୍ତେ
ମିଳିତ ସ୍ୱରରେ ॥ ଆହା ହା....ଆହା ହା....
ବଜ୍ରବାହୁ ॥ ମୁଁ ଏ ପୃଥିବୀର ସବୁଠାରୁ ପରାକ୍ରମୀ ସମ୍ରାଟ ।
ସମସ୍ତେ ॥ ଓ ହୋ ହୋ... ଓ ହୋ ହୋ...
ବଜ୍ରବାହୁ ॥ ଆମ୍ଭେ ହସ୍ତିନାପୁର ନରବିଷ୍ଣୁ ବଜ୍ରବାହୁ ଅଟୁ ।
ସମସ୍ତେ ॥ ଇ ହି ହି... ଇ ହି ହି....
ବଜ୍ରବାହୁ ॥ ଏବଂ ଆମ୍ଭେ ଏହି ପ୍ରମୋଦଶାଳାରେ ନିଜର ମୁଖ ପ୍ରତିବିମ୍ବ ଦର୍ଶନ କରୁଅଛୁ ।
ବିଦୂଷକ ନଂ ଦୁଇ ॥ ଆହା, କି ସୁନ୍ଦର ମୁଖ !
ବଜ୍ରବାହୁ ॥ (ହଠାତ୍ କ୍ଷୁବ୍ଧ ହୋଇ) କିନ୍ତୁ ଏ ମୃତ୍ତିକାଭାଣ୍ଡ ଏତେ କ୍ଷୁଦ୍ର କାହିଁକି ?
ବ୍ରହ୍ମଦତ୍ତ ॥ ଛାମୁଙ୍କର ପ୍ରତିବିମ୍ବ ସୁ ଦର୍ଶନ ହେବ ବୋଲି ।
ବଜ୍ରବାହୁ ॥ ନା, ମୁଁ ଚାହେଁ ଏ ମୃତ୍ତିକାଭାଣ୍ଡ ପ୍ରତିଦିନ ବଡ଼ ହେଉ ।
ବ୍ରହ୍ମଦତ୍ତ ॥ କିନ୍ତୁ ମୃତ୍ତିକା ଭାଣ୍ଡ ଏକ ବସ୍ତୁବାଚକ ବିଶେଷ୍ୟ । ତାହାର ବର୍ଦ୍ଧନଶୀଳତା ନାହିଁ ଛାମୁ !
ବଜ୍ରବାହୁ ॥ ଅମାତ୍ୟ !
ବ୍ରହ୍ମଦତ୍ତ ॥ ଛାମୁ !
ବଜ୍ରବାହୁ ॥ ଆମ୍ଭ ଭଣ୍ଡାର ଘରେ କେତେ ପରିମାଣରେ ବସ୍ତୁବାଚକ ବିଶେଷ୍ୟ ଅଛି ?
ବ୍ରହଦତ୍ତ ॥ ଛାମୁ କ'ଣ କହୁଛନ୍ତି ବୋଧଗମ୍ୟ ହେଉ ନାହିଁ ।
ବଜ୍ରବାହୁ ॥ ବିଦୂଷକ !
ବିଦୂଷକ ନଂ ଏକ ॥ ଛାମୁ !
ବଜ୍ରବାହୁ ॥ ବସ୍ତୁବାଚକ ବିଶେଷ୍ୟ ମାନେ କ'ଣ ?
ବିଦୂଷକ ନଂ ଏକ ॥ ଛାମୁ ଯାହା ବୁଝୁଛନ୍ତି ଠିକ୍ ସେୟା ।
ବଜ୍ରବାହୁ ॥ ତା'ମାନେ ଏ ମୃତ୍ତିକାଭାଣ୍ଡ ବଡ଼ ହେବ ନାହିଁ ?
ବିଦୂଷକ ନଂ ଦୁଇ ॥ ଅସମ୍ଭବ ଛାମୁ ।
ବଜ୍ରବାହୁ ॥ ଆମ୍ଭେ ହସ୍ତିନାପୁରର ସମ୍ରାଟ୍ ବଜ୍ରବାହୁ ! ଆମ୍ଭେ ଆଦେଶ କଲୁ ଏ ମୃତ୍ତିକାଭାଣ୍ଡ ବଡ଼ ହେଉ ।
ବିଦୂଷକ ନଂ ଦୁଇ ॥ ଏ ହସ୍ତିନାଖଣ୍ଡରେ କେବେ ଏହି ଘଟଣା ଘଟିନାହିଁ ଛାମୁ !
ବଜ୍ରବାହୁ ॥ (ଚିତ୍କାର କରି) କାହିଁକି ଘଟି ନାହିଁ ? ଅମାତ୍ୟ !

ବ୍ରହ୍ମଦତ୍ତ ।। ଛାମୁ, କେବଳ ମନୁଷ୍ୟ, ପଶୁ, ପକ୍ଷୀ, ଇତ୍ୟାଦି ବଢ଼ନ୍ତି ।

ବଜ୍ରବାହୁ ।। ତା'ହେଲେ ଉପାୟ ? ମୁଁ ଚାହେଁ ଏ ମୃତ୍ତିକାଭାଣ୍ଡ ପ୍ରତିଦିନ ବଡ଼ ହେବ । ମୋର ମୃତ୍ୟୁ ଦିବସ ବେଳକୁ ଯେପରି ତା' ଭିତରେ ସପ୍ତସାଗର ରହିପାରୁଥିବ ଏବଂ ଆମ୍ଭେ ସେଇ ସପ୍ତ ସମୁଦ୍ର ପାଣିରେ ମୁଖ ଦର୍ଶନ କରିବୁ ।

ବ୍ରହ୍ମଦତ୍ତ ।। ଯଥା ଆଜ୍ଞା ଛାମୁ ।

ବଜ୍ରବାହୁ ।। ଆମ୍ଭେ ହସ୍ତିନାପୁର ସମ୍ରାଟ ପୁଛା କରୁଅଛୁ– ଏହା କିପରି ସମ୍ଭବ ହେବ ?

ବ୍ରହ୍ମଦତ୍ତ ।। ହସ୍ତିନାପୁରର ସବୁ କୁମ୍ଭକାରମାନଙ୍କୁ ଆଦେଶ କରନ୍ତୁ ଛାମୁ ! ପ୍ରତିଦିନ ବଡ଼ ବଡ଼ ମୃତ୍ତିକାଭାଣ୍ଡ ଆପଣଙ୍କ ଛାମୁରେ ପେସ୍ କରିବେ ।

ବଜ୍ରବାହୁ ।। ବେଶ୍, ସେୟା କରନ୍ତୁ । ଲିତା, ଦଣ୍ଡ, ନିମିଷ ଘଟିକା ସହିତ ତାଳଦେଇ ସେମାନେ ମୃତ୍ତିକାଭାଣ୍ଡକୁ ବଡ଼ କରାନ୍ତୁ ।

ବ୍ରହ୍ମଦତ୍ତ ।। ବର୍ଦ୍ଧିଷ୍ଣୁ କରାନ୍ତୁ ।

ବଜ୍ରବାହୁ ।। ଅମାତ୍ୟ !

ବ୍ରହ୍ମଦତ୍ତ ।। ଛାମୁ !

ବଜ୍ରବାହୁ ।। ରାଜ୍ୟର ସମ୍ବାଦ କ'ଣ ?

ବ୍ରହ୍ମଦତ୍ତ ।। ରାଜ୍ୟରେ କାହାରି ଚିନ୍ତା–ଶକ୍ତି ନାହିଁ ।

ବଜ୍ରବାହୁ ।। ଚିନ୍ତା–ଶକ୍ତିର ପ୍ରୟୋଜନ କ'ଣ ? ଆମ୍ଭେ ଯେ ହସ୍ତିନାପୁରର ରାଜା !

ବ୍ରହ୍ମଦତ୍ତ ।। ପ୍ରଜାବତ୍ସଳ ରାଜା ।

ବିଦୂଷକ ନଂ ଏକ ।। ପ୍ରଜାବତ୍ସଳ ସମ୍ରାଟ ବଜ୍ରବାହୁଙ୍କର ଜୟ ହେଉ ।

ବିଦୂଷକ ନଂ ଦୁଇ ।। (ପ୍ରଥମ ବିଦୂଷକଙ୍କ ସହିତ ପ୍ରତିଯୋଗିତା କରି) ପ୍ରଜାବତ୍ସଳ ସମ୍ରାଟ ବଜ୍ରବାହୁଙ୍କର ଜୟ ହେଉ !

ବଜ୍ରବାହୁ ।। ଆମ୍ଭେ ଯେଉଁ ଦେଶର ପାଳକ ସେ ଦେଶରେ ପ୍ରଜାମାନେ ଚିନ୍ତା କରିବେ କାହିଁକି ?

ବ୍ରହ୍ମଦତ୍ତ ।। ଛାମୁ ସତ କହୁଛନ୍ତି ।

ବଜ୍ରବାହୁ ।। ପ୍ରଜାଗଣ ଆମ୍ଭର ପୁତ୍ରତୁଲ୍ୟ ।

ବିଦୂଷକ ନଂ ଏକ ।। ଆହା.... ପୁତ୍ର ସେବା କରି କରି ରାଜାଙ୍କ ଅଙ୍ଗ କ୍ଷୀଣ ହୋଇ ଆସିଲାଣି !

ବିଦୂଷକ ନଂ ଦୁଇ ।। ପୁତ୍ର ସେବା କରି କରି ରାଜାଙ୍କ କପୋଳ ରେଖାଗ୍ରସ୍ତ ହେଲାଣି !

ବଜ୍ରବାହୁ ।। ତା'ହେଲେ ସବୁ ଠିକ୍ ଠାକ୍ ଚାଲିଛି !

ବ୍ରହ୍ମଦତ୍ତ ।। ଛାମୁଙ୍କ ବ୍ୟକ୍ତିତ୍ୱ ପ୍ରଭାବରୁ କୌଣସି ଜଟିଳ ସମସ୍ୟା ନାହିଁ ।

ବଜ୍ରବାହୁ ।। ଆମ୍ଭେ ବଜ୍ରବାହୁ, ଜଣେ ସୁଶାସକ ।

ବ୍ରହ୍ମଦତ୍ତ ।। ସୁପଣ୍ଡିତ ମଧ୍ୟ ।

ବଜ୍ରବାହୁ ।। ଆମ୍ଭେ ସମ୍ରାଟ, ସମ୍ରାଟ ଅର୍ଥାତ୍ ନରବିଷ୍ଣୁ ।

ବ୍ରହ୍ମଦତ୍ତ ।। ଆପଣଙ୍କ ଆଦେଶରେ ହସ୍ତିନା ସାମ୍ରାଜ୍ୟରେ ଚନ୍ଦ୍ର-ସୂର୍ଯ୍ୟ ଉଦେ ଅସ୍ତ ହେଉଛନ୍ତି ।

ବଜ୍ରବାହୁ ।। ଠିକ୍ ସମୟରେ ସେମାନେ ଉଦୟ–ଅସ୍ତ ହେଉଛନ୍ତି କି ନାହିଁ ?

ବ୍ରହ୍ମଦତ୍ତ ।। ହେଉଛନ୍ତି ଛାମୁ !

ବଜ୍ରବାହୁ ।। ଆବଶ୍ୟକ ପରିମାଣ ଆଲୋକ, ପବନ ଓ ଜଳ ପ୍ରଜାମାନଙ୍କୁ ମିଳୁଛି କି ନାହିଁ ?

ବ୍ରହ୍ମଦତ୍ତ ।। ମିଳୁଅଛି ଛାମୁ ।

ବଜ୍ରବାହୁ ।। (ଆତ୍ମ ପ୍ରସନ୍ନ ହୋଇ) ସେଥି ସକାଶେ ଆମ୍ଭେ ଏତେ ଦୀର୍ଘଦିନ ଧରି ଶସାନ କରି ଆସିଲୁ ।

ବ୍ରହ୍ମଦତ୍ତ ।। ଆଜି ଆପଣଙ୍କ ଶାସନର ପଚିଶି ବର୍ଷ ପୂରିଗଲା ଛାମୁ !

ବଜ୍ରବାହୁ ।। ଓ ! ସେଥିପାଇଁ ପ୍ରମୋଦଶାଳାରେ ଏ ଆୟୋଜନ ।

ବ୍ରହ୍ମଦତ୍ତ ।। ଛାମୁ, ଆଜିର ଏହି ଉତ୍ସବକୁ ରଜତ ଜୟନ୍ତୀ କୁହାଯାଏ ।

ବିଦୂଷକ ନଂ ଏକ ।। ହସ୍ତିନାପୁରରେ ବର୍ତ୍ତମାନ ସୁବର୍ଣ୍ଣଯୁଗ ।

ବିଦୂଷକ ନଂ ଦୁଇ ।। ସମ୍ରାଟଙ୍କ ନାମ ଇତିହାସରେ ସୁବର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ରହିବ ।

ବଜ୍ରବାହୁ ।। ବିଦୂଷକଗଣ !

ବିଦୂଷକ ନଂ ଏକ ।। ଆଜ୍ଞା କରନ୍ତୁ ଛାମୁ ।

ବିଦୂଷକ ନଂ ଦୁଇ ।। ଆମ୍ଭେ ବିଦୂଷକମାନେ ଯେ ଛାମୁଙ୍କ କିଙ୍କର !

ବଜ୍ରବାହୁ ।। ଏହି ରଜତଜୟନ୍ତୀର ସନ୍ଧ୍ୟାକୁ ଆମ୍ଭେ ଉପଭୋଗ କରିବାକୁ ଚାହୁଁ ।

ବିଦୂଷକ ନଂ ଏକ ।। ହସ୍ତିନାପୁରର ଶ୍ରେଷ୍ଠ ନର୍ତ୍ତକୀ ଆଜି ନୃତ୍ୟ ପରିବେଷଣ କରିବେ ।

ବିଦୂଷକ ନଂ ଦୁଇ ।। କର୍ଣ୍ଣାଟ ଦେଶର କାପାଳିକ ଛାମୁଙ୍କ ଦରବାରରେ ଭୋଜବିଦ୍ୟା ପରିବେଷଣ କରିବେ ।

ବିଦୂଷକ ନଂ ଏକ ।। ଗାନ୍ଧାର ଦେଶରୁ ଅତର ଆସିବ ।

ବିଦୂଷକ ନଂ ଦୁଇ ।। ଉତ୍କ୍ର ଦେଶର ଦାସକାଠି !

ବିଦୂଷକ ନଂ ଏକ ।। ଗୌଡ଼ ଦେଶର ସଂକୀର୍ତ୍ତନ !

ବଜ୍ରବାହୁ ।। ଅମାତ୍ୟ !

ବୃହନ୍ନଦତ୍ତ ।। ଛାମୁ !

ବଜ୍ରବାହୁ ।। ଆଜି ଆମ୍ଭ ଭଣ୍ଡାର ସମସ୍ତଙ୍କ ପାଇଁ ଖୋଲା ରହୁ ।

ବୃହନ୍ନଦତ୍ତ ।। ଅମାତ୍ୟ ଶୀଳଭଦ୍ରଙ୍କୁ ଖବର ଜଣାଇ ଦେବି ଛାମୁ !

ବଜ୍ରବାହୁ ।। ରାସ୍ତା ରାସ୍ତାରେ, ପୁର–ପଲ୍ଲୀରେ ସୋମରସ ବଣ୍ଟନ କରାଯାଉ ।

ବୃହନ୍ନଦତ୍ତ ।। ଛାମୁ !

ବଜ୍ରବାହୁ ।। ଏ ରାଜପ୍ରାସାଦ ଆଲୋକିତ ହେବ ।

ବୃହନ୍ନଦତ୍ତ ।। ପ୍ରଦୀପରେ ସଜାଇ ଦିଆଯିବ ।

ବଜ୍ରବାହୁ ।। ନା, ସୂର୍ଯ୍ୟଦେବଙ୍କୁ ଆଦେଶ କର । ଆମ୍ଭେ ହସ୍ତିନାପୁର ରାଜନ୍, ନରବିଷ୍ଣୁ ସମ୍ରାଟ ବଜ୍ରବାହୁ ଆଦେଶ କଲୁ ।

ବୃହନ୍ନଦତ୍ତ ।। କିନ୍ତୁ ପ୍ରଭୁ ! ସୂର୍ଯ୍ୟବଂଶ ନୃପତିଙ୍କ ଉଆସରେ ସୂର୍ଯ୍ୟ ଯେ ନଗଣ୍ୟ !

ବଜ୍ରବାହୁ ।। (ପ୍ରୀତ ହୋଇ) ଠିକ୍ ଠିକ୍ । ସୂର୍ଯ୍ୟ ଅନାବଶ୍ୟକ ।

ବୃହନ୍ନଦତ୍ତ ।। ଯଥା ଆଜ୍ଞା, ପ୍ରଭୁ !

ବଜ୍ରବାହୁ ।। ତା' ହେଲେ ସେହିପରି କରାଯାଉ । ସୂର୍ଯ୍ୟାଲୋକ ଆମ୍ଭ ରାଜ୍ୟର ଏକ ଅନାବଶ୍ୟକ ଦ୍ରବ୍ୟ ।

ବୃହନ୍ନଦତ୍ତ ।। ଛାମୁ !

ବଜ୍ରବାହୁ ।। ଆମେ ନରବିଷ୍ଣୁ । ଏଥିରେ ସନ୍ଦେହ ଅଛି ?

ବୃହନ୍ନଦତ୍ତ ।। ଏହି କଥା କହିବାକୁ କାହା ଜିଭରେ ହାଡ଼ ଅଛି ଛାମୁ ?

ବଜ୍ରବାହୁ ।। ପୁରାଣ ଶାସ୍ତ୍ରରେ ଲେଖାଅଛି ପୃଥିବୀ ପ୍ରତି ରାଜାମାନେ ନରବିଷ୍ଣୁ । ଆମ୍ଭେ ଯେବେ ନରବିଷ୍ଣୁ ହେଲୁ–ଦେବତା ବିଷ୍ଣୁ

ଯେଉଁ ପାଳନ ସୃଷ୍ଟି କରିଅଛନ୍ତି, ଆମ୍ଭେ ତା' ଠାରୁ କିଛି ଅଧିକ ନ କଲେ ଲୋକେ କ'ଣ ସମ୍ରାଟ ବୋଲି ଆମ୍ଭଙ୍କୁ ମାନିବେ ?

ବ୍ରହ୍ମଦତ୍ତ ॥ ଏହା ମଧ୍ୟ ଏକ ବିଚାର୍ଯ୍ୟ ବିଷୟ ଛାମୁ !

ବଜ୍ରବାହୁ ॥ ତା' ହେଲେ କି କାର୍ଯ୍ୟକ୍ରମ କରିବା କୁହ ।

ବ୍ରହ୍ମଦତ୍ତ ॥ ଛାମୁଙ୍କର ଯାହା ଇଚ୍ଛା !

ବଜ୍ରବାହୁ ॥ (ସମ୍ରାଟ ମୃତ୍ତିକା ଭାଣ୍ଡ ପାଖକୁ ଗଲେ । ଗୋଡ଼ିଟିଏ ପାଣିରେ ପକାଇଲେ ଓ ହସିଲେ) ତା' ହେଲେ ମୋର ଆଦେଶ—ଆମ୍ଭ ସାମ୍ରାଜ୍ୟ କେବଳ ଅନ୍ଧାର ଭିତରେ ପରିଚାଳିତ ହେବ । ହସ୍ତିନାପୁରରେ ଆଲୋକ ପ୍ରବେଶ କରି ପାରିବ ନାହିଁ ।

ବ୍ରହ୍ମଦତ୍ତ ॥ ଯଥା ଆଜ୍ଞା ପ୍ରଭୁ !

ବଜ୍ରବାହୁ ॥ ଅନ୍ୟ ରାଜ୍ୟମାନଙ୍କରେ ଯେତେବେଳେ ସୂର୍ଯ୍ୟ ଉଦେ ହେବେ—ଆମ୍ଭ ପ୍ରଜାକୁଳ ସେତିକିବେଳେ ଗଭୀର ନିଦ୍ରାରେ ଅଭିଭୂତ ହୋଇପଡ଼ିବେ ।

ବ୍ରହ୍ମଦତ୍ତ ॥ ସମ୍ପୂର୍ଣ୍ଣ ନିଦ୍ରା ନ ହେଲେ ମଧ୍ୟ ଅର୍ଦ୍ଧ ନିଦ୍ରା ।

ବଜ୍ରବାହୁ ॥ ଏ ରାଜ୍ୟର ସମସ୍ତ ପଶୁ, ପକ୍ଷୀ, କାକ, କୁକ୍କୁଟଙ୍କୁ ଏ ସମ୍ବାଦ ଜଣାଇ ଦିଅ ।

ବ୍ରହ୍ମଦତ୍ତ ॥ ଆବଶ୍ୟକ–ଅନାବଶ୍ୟକ ପାଟିତୁଣ୍ଡ ସବୁ ବିଳିବିଳେଇଲା ଭଳି ଶୁଭିବ ।

ବଜ୍ରବାହୁ ॥ ସାଧୁ ! ସାଧୁ !

ବ୍ରହ୍ମଦତ୍ତ ॥ ଏ ରାଜ୍ୟର ନ୍ୟାୟାଳୟ କେବଳ ରାତ୍ରିବେଳା ବସିବ ।

ବଜ୍ରବାହୁ ॥ ହସ୍ତିନାପୁରରେ ଦିନ ଓ ରାତିର ପ୍ରଭେଦ ରହିବ ନାହିଁ ।

ବ୍ରହ୍ମଦତ୍ତ ॥ ଆଲୋକ ଏବଂ ଅନ୍ଧାରର ସାମ୍ରାଜ୍ୟ ଏଠାରେ ଲୋପ ପାଇଯିବ ।

ବଜ୍ରବାହୁ ॥ ସମାଜବାଦ ଉପରେ ଏକ ନୂଆ ସାମ୍ରାଜ୍ୟ ପ୍ରତିଷ୍ଠିତ ହେବ ।

ବ୍ରହ୍ମଦତ୍ତ ॥ ସର୍ବେ ହୋଇବେ ଏକାକାର । ଜୟ ସମ୍ରାଟ ବଜ୍ରବାହୁଙ୍କର ଜୟ ହେଉ । (ଆବହ ସଙ୍ଗୀତରେ ଜୟନ୍ତୀ ଉତ୍ସବର ବାଦ୍ୟ)

ବଜ୍ରବାହୁ ॥ ବେଶ୍, ତା' ହେଲେ ଏହି ଉତ୍ସବ ଉପଲକ୍ଷେ ଆମ୍ଭର ଏଇ ଗୁରୁବାଣୀ ପ୍ରଜାମାନଙ୍କୁ ଶୁଭେଚ୍ଛା ବୋଲି ଜଣାଇଦିଅ ।

ବ୍ରହ୍ମଦତ୍ତ ॥ ଛାମୁ, ତା'ହେଲେ ବର୍ତ୍ତମାନ ଆମ୍ଭ ରାଜକାର୍ଯ୍ୟ ଆରମ୍ଭ କରିବା ?

ବଜ୍ରବାହୁ ॥ ଅର୍ଥମନ୍ତ୍ରୀ ଶୀଳଭଦ୍ରଙ୍କୁ ଏଠାକୁ ଆସିବା ପାଇଁ କୁହ ।

ବ୍ରହ୍ମଦତ୍ତ ॥ ଦୂତ ! ମହାରାଜାଙ୍କ ପ୍ରମୋଦଶାଳାକୁ ଆସିବା ପାଇଁ ଅମାତ୍ୟଙ୍କୁ ସମ୍ବାଦ ଦିଅ । (ଦୂତ ଯାଇଛି)

ବଜ୍ରବାହୁ ॥ ତା'ହେଲେ ଆଜିଠାରୁ ରାଜକାର୍ଯ୍ୟ କେବଳ ପ୍ରମୋଦଶାଳାରେ ହିଁ ପରିଚାଳିତ ହେଉ ।

ବ୍ରହ୍ମଦତ୍ତ ॥ ସାଧୁ ! ଏହା ଏକ ଉତ୍ତମ ପ୍ରସ୍ତାବ ଛାମୁ ! ପ୍ରଜାକୁଳ ଏହାଦ୍ୱାରା ଯଥେଷ୍ଟ ଉପକୃତ ହେବେ ।

ବଜ୍ରବାହୁ ॥ କାରଣ ରାଜକାର୍ଯ୍ୟରେ ଆମ୍ଭେ ଯଥେଷ୍ଟ ଆନନ୍ଦ ପାଉଅଛୁ । ଆମ୍ଭେ ପ୍ରଜାବତ୍ସଳ ରାଜା । ତେଣୁ ପ୍ରମୋଦଶାଳା ହିଁ ରାଜକାର୍ଯ୍ୟ ପରିଚାଳନା ପାଇଁ ଉପଯୁକ୍ତ ସ୍ଥାନ ବୋଲି ଆମ୍ଭେ ବିବେଚନା କଲୁ ।

ଶୀଳଭଦ୍ର ॥ (ପ୍ରବେଶ କରି) ବୀର ଶ୍ରୀ ବୀରବର ପ୍ରବଳ ପରାକ୍ରମୀ ସମ୍ରାଟ ବଜ୍ରବାହୁ । କେ.ସି.ଆଇ.ଇ, ବି.ଏଲ୍; ପଦ୍ମଭୂଷଣ, ପରମବୀରଚକ୍ର, ପିଏଚ.ଡି; ଏମ୍, ଏମ୍.ଏସ୍; ଏମ୍.ବି.ବି.ଏସ୍; ସଭାପତି, ଆଇ.ଏ.ଏଫ୍; ପ୍ରତିଷ୍ଠାତା, ବିଶ୍ୱେଶ୍ୱର ମନ୍ଦିର; ସଂପାଦକ, ଆଇ.ସି. ଏସ୍‌ଙ୍କର ଜୟ ହେଉ ।

ବଜ୍ରବାହୁ ॥ ଆସନ୍ତୁ ଶୀଳଭଦ୍ର ଅମାତ୍ୟ ! ଆମ୍ଭେ ହସ୍ତିନାପୁର ରାଜ୍ୟର ରଜତ ଜୟନ୍ତୀ ଉତ୍ସବ ଉପଲକ୍ଷେ ଏକ ନୂତନ ଆଇନ ପ୍ରଣୟନ କରିଅଛୁ ।

ଶୀଳଭଦ୍ର ॥ ଏ ଅକିଞ୍ଚନ ସେ ସମ୍ବାଦ ଜାଣିପାରେ କି ?

ବ୍ରହ୍ମଦତ୍ତ ॥ ପ୍ରବଳ ପ୍ରତାପୀ ସମ୍ରାଟ ବଜ୍ରବାହୁଙ୍କ ହୁକୁମ ହେଲା– ହସ୍ତିନାପୁର ରାଜ୍ୟରୁ ଅନ୍ଧାର ଓ ଆଲୋକର ଭେଦାଭେଦ ଉଠିଗଲା । ଏଥୁଅନ୍ତେ ଏ ରାଜ୍ୟରେ କେବଳ ଅନ୍ଧକାର ହିଁ ଅନୁଭୂତ ହେବ ।

ଶୀଳଭଦ୍ର ॥ ସାଧୁ ଉଦ୍ୟମ ପ୍ରଭୁ ! ସମ୍ରାଟ ବଜ୍ରବାହୁ ବ୍ୟତିରେକେ କିଏ ଏଇ ନୂତନ ଯୁଗର ଆହ୍ୱାନ ଦେଇପାରେ ?

ବଜ୍ରବାହୁ ॥ ଶୀଳଭଦ୍ର !

ଶୀଳଭଦ୍ର ॥ ଛାମୁ !

ବଜ୍ରବାହୁ ॥ ରାଜ୍ୟର ସମ୍ବାଦ ଆମ୍ଭେ ପୁଚ୍ଛା କରୁଅଛୁ ।

ଶୀଳଭଦ୍ର ॥ କର୍ଣ୍ଣାଟ ଦେଶରେ ଅଗ୍ନିକାଣ୍ଡ ଘଟିଛି । ସେ ଦେଶରେ ଦୁଇଟି ହାତ ଓ ଦୁଇଟି ଗୋଡ଼ର ଆବଶ୍ୟକତା ନାହିଁ ବୋଲି ପ୍ରଜାକୁଳ ଅନୁଭବ କରୁଛନ୍ତି ।

ବଜ୍ରବାହୁ ॥ ତା'ହେଲେ ?

ଶୀଳଭଦ୍ର ॥ ସବୁ ଦ୍ୱିପଦ ଓ ଦ୍ୱିହସ୍ତ ମାନବ ପରସ୍ପରର ହସ୍ତପଦ ଛେଦନ କରୁଅଛନ୍ତି ।

ବଜ୍ରବାହୁ ॥ ଘୋର ଅନ୍ୟାୟ । ସେମାନଙ୍କୁ ଶାସ୍ତି ଆବଶ୍ୟକ ।

ଶୀଳଭଦ୍ର ॥ କର୍ଣ୍ଣାଟ ଦେଶର ସାମନ୍ତ ରାଜା ଆସିଛନ୍ତି, ତାହାଙ୍କୁ....

ବଜ୍ରବାହୁ ॥ ଅତିଶୀଘ୍ର ତାହାଙ୍କୁ ଅଣା କରାଅ–

ଶୀଳଭଦ୍ର ॥ ଦୂତ ! କର୍ଣ୍ଣାଟ ଦେଶ ଜମିଦାରଙ୍କୁ ଡକାଅ–

କର୍ଣ୍ଣାଟ ଜମିଦାର ॥ (ପ୍ରବେଶ କରି) ମହାରାଜ ବଜ୍ରବାହୁଙ୍କର ଜୟ ହେଉ !

ବଜ୍ରବାହୁ ॥ ତୁମ୍ଭେ ସାଧାରଣ ସୌଜନ୍ୟ ସୁଦ୍ଧା ଶିକ୍ଷା କରି ନାହଁ ?

କର୍ଣ୍ଣାଟ ଜମିଦାର ॥ ଆବାଃ ! ମୋର ଅପରାଧ ଛାମୁ ?

ବ୍ରହ୍ମଦତ୍ତ ॥ ହସ୍ତିନାପୁର ରାଜାଙ୍କୁ କିପରି ସମ୍ବୋଧନ କରିବାକୁ ହେବ ତାହା କ'ଣ ବୁଝାଇବାକୁ ପଡ଼ିବ ?

ଶୀଳଭଦ୍ର ॥ ଏ ପୃଥ୍ୱୀର ସମ୍ରାଟ ବଜ୍ରବାହୁଙ୍କ ନାମ ଜାଣିନାହଁ ?

କର୍ଣ୍ଣାଟ ଜମିଦାର ॥ ଜାଣିଛି ପ୍ରଭୁ ! (ଥରି ଉଠିଲେ)

ବ୍ରହ୍ମଦତ୍ତ ॥ ରାଜ ସମ୍ବୋଧନର ବିଶେଷଣଗୁଡ଼ିକ ଜାଣିନାହଁ ?

କର୍ଣ୍ଣାଟ ଜମିଦାର ॥ ରାଜଧାନୀ ହସ୍ତିନାପୁରଠାରୁ ବହୁଦୂରରେ ରହୁଅଛି ପ୍ରଭୁ ! ଜାଣିବାର ଅବକାଶ ପାଇନାହିଁ ।

ବଜ୍ରବାହୁ ॥ ଅନାର୍ଯ୍ୟକୁ ବୁଝାଇଦିଅ ଅମାତ୍ୟ !

ଶୀଳଭଦ୍ର ॥ କୁହ ! ବୀର ଶ୍ରୀ ବୀରବର ପ୍ରବଳ ପରାକ୍ରମୀ ସମ୍ରାଟ ବଜ୍ରବାହୁ–

କର୍ଣ୍ଣାଟ ଜମିଦାର ॥ ବୀର ଶ୍ରୀ ବୀରବର ପ୍ରବଳ ପରାକ୍ରମୀ ସମ୍ରାଟ ବଜ୍ରବାହୁ–

ଶୀଳଭଦ୍ର ॥ କେ.ସି.ଆଇ.ଇ; ବି.ଏଲ୍; ପଦ୍ମଭୂଷଣ, ପରମ ବୀର ଚକ୍ର ପିଏଚ.ଡ଼ି–

କର୍ଣ୍ଣାଟ ଜମିଦାର ।। ଆବାଃ !! କେ.ସି.ଆଇ; ବି.ଏଲ୍; ପଦ୍ମଭୂଷଣ; ପରମ ବୀର ଚକ୍ର, ପିଏଚ୍.ଡ଼ି.–

ଶୀଳଭଦ୍ର ।। ସାଧୁ ! ତା' ପରେ କୁହ ଡି.ଲିଟ୍; ଏମ୍.ବି.ବି.ଏସ୍; ଏ.ଏମ୍.ଆଇ.ଇ; ଏସ୍, ଓ–ଏଲ୍ । ଏମ୍. ଏସ୍.ପି. ଜି.ଏସ୍;

କର୍ଣ୍ଣାଟ ଜମିଦାର ।। ଡି.ଲିଟ୍; ଏମ୍.ବି.ବି.ଏସ୍; ଏ.ଏମ୍.ଆଇ.ଇ; ଏସ୍, ଓ–ଏଲ୍, ଏମ୍, ଏସ୍.ପି.ଜି; ଏସ....

ଶୀଳଭଦ୍ର ।। କର୍ଣ୍ଣାଟ ଜମିଦାରଙ୍କ ମୁଖରେ ଆପଣଙ୍କ ପ୍ରଶଂସା କି ସୁନ୍ଦର ଶୁଭୁଅଛି ପ୍ରଭୁ !

ବଜ୍ରବାହୁ ।। ଆମ୍ଭର ନାମଟି କ'ଣ ଏଡ଼େ ଶ୍ରୁତି–ମଧୁର ?

ବିଦୂଷକ ନଂ ଏକ ।। ବ–ଜ୍ର–ବା–ହୁ– !! ଆଃ, ହାଃ, ହାଃ, ହାଃ... କି ମଧୁର !!

ବିଦୂଷକ ନଂ ଦୁଇ ।। ବଜ୍ରବାହୁ !! ଇଃ ହିଃ–ହିଃ... କି ନାଁ... !!

ଶୀଳଭଦ୍ର ।। ଆହୁରି କୁହ । ସଭାପତି ଆଇ.ଏ.ଏଫ୍, ପ୍ରତିଷ୍ଠାତା ବିଶ୍ୱେଶ୍ୱର ମନ୍ଦିର ଓ ସମ୍ପାଦକ ଆଇ.ସି.ଏସ୍....

କର୍ଣ୍ଣାଟ ଜମିଦାର ।। ସଭାପତି ଆଇ.ଏ. ଏଫ୍, ପ୍ରତିଷ୍ଠାତା ବିଶ୍ୱେଶ୍ୱର ମନ୍ଦିର ଓ ସମ୍ପାଦକ ଆଇ.ସି; ଏସ୍.... ଙ୍କର ଜୟ ହେଉ ।

ବଜ୍ରବାହୁ ।। ଅମାତ୍ୟ ଶୀଳଭଦ୍ର ! ବର୍ତ୍ତମାନ କର୍ଣ୍ଣାଟ ଜମିଦାରଙ୍କୁ ତାଙ୍କ ସମାଚାର ଶୁଣାଇବା ପାଇଁ ଆଦେଶ ପ୍ରଦାନ କରାଗଲା ।

ଶୀଳଭଦ୍ର ।। କୁହନ୍ତୁ, ଆପଣଙ୍କ କର୍ଣ୍ଣାଟ ସମାଚାର ।

କର୍ଣ୍ଣାଟ ଜମିଦାର ।। ଛାମୁ, କର୍ଣ୍ଣାଟ ମାନବଗଣ ଦ୍ୱିଖଣ୍ଡିତ ।

ବଜ୍ରବାହୁ ।। କାହିଁପାଇଁ ?

କର୍ଣ୍ଣାଟ ଜମିଦାର ।। ଆପଣ ସେମାନଙ୍କୁ ଦୁଇଟି ହସ୍ତ ଓ ଦୁଇଟି ପାଦ ଦେଇଛନ୍ତି ।

ବଜ୍ରବାହୁ ।। (ନିଶ ଉପରେ ହାତ ବୁଲାଇ ଆଣି) ଅବଶ୍ୟ ଆମ୍ଭେ ନରବିଷ୍ଣୁ !

କର୍ଣ୍ଣାଟ ଜମିଦାର ।। କିନ୍ତୁ ଛାମୁ, ଦୁଇଟି ହସ୍ତ ଓ ଦୁଇଟି ପାଦଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହୋଇପାରି ନାହିଁ ।

ବଜ୍ରବାହୁ ।। କାହିଁ ପାଇଁ ?

କର୍ଣ୍ଣାଟ ଜମିଦାର ।। ଗୋଟିଏ ହାତ ବେଶୀ ପରାକ୍ରମୀ–କେବଳ ଖାଇବାରେ ଅଭ୍ୟସ୍ତ, ସେହିପରି ଗୋଟିଏ ପାଦ ପ୍ରଥମେ ଚାଲୁଛି ଏବଂ ଅନ୍ୟଟି ସବୁବେଳେ ତା ପଛରେ ।

ବଜ୍ରବାହୁ ।। ଅମାତ୍ୟ, ଏହା କିପରି ସମ୍ଭବ ହେଲା ? ହସ୍ତିନାପୁର ରାଜ୍ୟରେ ହସ୍ତ ଓ ପଦମାନେ ଏତେ ଅବାଧ କାହିଁକି ? ନା–ନା–ଏହା ସହ୍ୟ କରାଯାଇପାରେନା ।

କର୍ଣ୍ଣାଟ ଜମିଦାର ।। ଛାମୁଙ୍କର ଉପଦେଶ ପାଇବା ପାଇଁ ଆସିଛି ପ୍ରଭୁ !

ବ୍ରହ୍ମଦତ୍ତ ।। ଏ ପର୍ଯ୍ୟନ୍ତ କି ପ୍ରତିକାର କଲଣି ?

କର୍ଣ୍ଣାଟ ଜମିଦାର ।। ମାନବମାନେ ପରସ୍ପରର ହସ୍ତପଦ ଛେଦନ କରୁଅଛନ୍ତି ।

ବଜ୍ରବାହୁ ।। ଉତ୍ତମ । ଅତି ଉତ୍ତମ କାର୍ଯ୍ୟ କରୁଅଛନ୍ତି ।

ଶୀଳଭଦ୍ର ।। ସାଧୁ ! ସାଧୁ !

ବ୍ରହ୍ମଦତ୍ତ ।। ସାଧୁ ! ସାଧୁ !

ବଜ୍ରବାହୁ ।। ସମସ୍ତଙ୍କ ହସ୍ତପଦ ଛେଦନ କରାଗଲାଣି କି ନାହିଁ ?

କର୍ଣ୍ଣାଟ ଜମିଦାର ।। ପ୍ରାୟ ମୁଁ ସ୍ୱଦେଶକୁ ଫେରିଲା ବେଳକୁ ସମସ୍ତଙ୍କ ହସ୍ତପଦ ସଫା ହୋଇଯାଇଥିବ ।

ବଜ୍ରବାହୁ ।। ତା' ଦ୍ୱାରା ଆମ୍ଭର ଦାୟିତ୍ୱ ଲାଘବ ହେଲା ।

ଶୀଳଭଦ୍ର ।। ଛାମୁଙ୍କର ଶାସନରେ ପ୍ରଜାମାନେ ସଚେତନଶୀଳ ହେଲେଣି ।

ବଜ୍ରବାହୁ ।। ତା' ଅର୍ଥ କର୍ଣ୍ଣାଟ ଜମିଦାରଙ୍କ ବ୍ୟତୀତ ଅନ୍ୟ ସମସ୍ତଙ୍କର ହସ୍ତପଦ ଛେଦିତ ହୋଇଯାଇଛି ।

କର୍ଣ୍ଣାଟ ଜମିଦାର ।। ହଁ ପ୍ରଭୁ ! ପ୍ରଜାମାନଙ୍କୁ ସେ ସୁଯୋଗ ଦେଇ ମୁଁ ଛାମୁଙ୍କ ଦର୍ଶନ ନିମନ୍ତେ ଚାଲିଆସିଲି ।

ବଜ୍ରବାହୁ ।। ଅମାତ୍ୟ ! କର୍ଣ୍ଣାଟ ଜମିଦାରଙ୍କ ହସ୍ତପଦ ଛେଦନ କରିବା ପାଇଁ ଆମ୍ଭେ ଆଦେଶ କଲୁ ।

କର୍ଣ୍ଣାଟ ଜମିଦାର ।। (ଭୟରେ ଥରିବେ । ନୃତ୍ୟ କଲା ଭଳି) ଆବାଃ ! ଛାମୁ !

ବଜ୍ରବାହୁ ।। ଅମାତ୍ୟ ! ଦୂତକୁ କହି ଏହାଙ୍କ ହସ୍ତପଦ ଛେଦନ କର । (ସେମାନେ କର୍ଣ୍ଣାଟ ଜମିଦାରଙ୍କୁ ନେଉ ନେଉ) କର୍ଣ୍ଣାଟ ଦେଶର ସବୁ ଛେଦିତ ହସ୍ତପଦ ମହଜୁଦ ଅଛି ନା ନଷ୍ଟ ହୋଇଗଲାଣି ?

କର୍ଣ୍ଣାଟ ଜମିଦାର ।। ଦେଶରେ ରକ୍ତନଦୀ ପ୍ରବାହିତ ! ଶରୀରରୁ ବିଚ୍ଛିନ୍ନ ହୋଇ ହସ୍ତପଦ ରାଜପଥରେ ପଡ଼ିଅଛନ୍ତି ।

ବଜ୍ରବାହୁ ।। ରାଜ୍ୟକୁ ଫେରି ତା' ହେଲେ ଆଉ ଏକ କାର୍ଯ୍ୟ କର ।

କର୍ଣ୍ଣାଟ ଜମିଦାର ।। ଛାମୁ, ଏ ଅଧମକୁ କ୍ଷମା ଦିଅନ୍ତୁ ପ୍ରଭୁ !

ବଜ୍ରବାହୁ ।। କର୍ତ୍ତିତ ହସ୍ତ ଓ ପଦମାନଙ୍କୁ ହଣାକଟା ହୋଇଥିବା ଲୋକଙ୍କର ସୀମାରେଖାରେ ପୋତି ଦିଆଯାଉ । କୃଷି ଅମାତ୍ୟକୁ କହି ଉତ୍ତମ ସାର ଯୋଗାଇ ଦିଆଯାଉ । ସବୁଜ ବିପ୍ଳବ କରାଯାଉ । ତା' ହେଲେ ଦେଖିବ ପୋତା ହୋଇଥିବା ହସ୍ତ ଓ ପଦମାନଙ୍କର ଏକ ସୁନ୍ଦର ଫସଲ ସୃଷ୍ଟି ହେବ ।

ବ୍ରହ୍ମଦତ୍ତ ।। ହସ୍ତପଦ ଚାଷ !

ବଜ୍ରବାହୁ ।। ଗଛରେ ଫଳିଥିବା ହସ୍ତ ଓ ପଦମାନଙ୍କୁ ଆଣି ଭଣ୍ଡାର ଘରେ ରଖାଯାଉ । ଅସନ୍ତୁଷ୍ଟ ହସ୍ତ ଓ ପଦଧାରୀଙ୍କୁ ଆବଶ୍ୟକ ସ୍ଥଳେ ତାହା ଯୋଗାଇ ଦିଆଯିବ !

ଶୀଳଭଦ୍ର ।। ସାଧୁ ! ସାଧୁ !

କର୍ଣ୍ଣାଟ ଜମିଦାର ।। ଛାମୁ, ଏ ଅଧମକୁ କ୍ଷମା ଦିଅନ୍ତୁ ପ୍ରଭୁ ! ମୁଁ କର୍ଣ୍ଣାଟ ଦେଶକୁ ଫେରିଯିବାକୁ ଚାହେଁ ନାଇଁ ।

ବଜ୍ରବାହୁ ।। ସମ୍ରାଟ ବଜ୍ରବାହୁଙ୍କ ଅଧୀନ ଜମିଦାରମାନେ କାପୁରୁଷ ନୁହଁନ୍ତି । ତୁମ୍ଭକୁ ହସି ହସି ହସ୍ତପଦ କର୍ତ୍ତନ କରାଇବାକୁ ପଡ଼ିବ ।

କର୍ଣ୍ଣାଟ ଜମିଦାର ।। ଛାମୁ... ହସ୍ତ ଓ ପାଦ ତ ମୁଣ୍ଡର କେଶ ନୁହେଁ !

ବଜ୍ରବାହୁ ।। ଦେଶ ପାଇଁ ଯେ ପ୍ରାଣ ଦିଏ ତା' ନାଁ ଶହୀଦ ।

କର୍ଣ୍ଣାଟ ଜମିଦାର ।। ମୁଁ ବଂଚିବାକୁ ଚାହେଁ ପ୍ରଭୁ ! ଶହୀଦ ହେବା ପାଇଁ ନୁହେଁ ।

ବଜ୍ରବାହୁ ।। ହସ୍ତ ଓ ପାଦ କର୍ତ୍ତନ କଲାବେଳେ ଯଦି ଅକସ୍ମାତ୍ ତୁମ୍ଭର ମୃତ୍ୟୁ ଘଟେ ତା' ହେଲେ ଆମ୍ଭେ ହସ୍ତିନାପୁରର ଗୋଟିଏ ମାର୍ଗ ତୁମ୍ଭ ନାମରେ ନାମିତ କରିବୁ ।

କର୍ଣ୍ଣାଟ ଜମିଦାର ।। ମୁଁ ମିଥ୍ୟା କହୁଥିଲି ଛାମୁ । କର୍ଣ୍ଣାଟ ଦେଶରେ କିଛି ହୋଇ ନାହିଁ । କିଛି ଘଟିନାହିଁ ।

ବଜ୍ରବାହୁ ।। ତଥାପି ତୁମ୍ଭର ହସ୍ତପଦ ଛେଦିତ ହେବ । ଆମ୍ଭେ ହସ୍ତିନାପୁରର ନରବିଷ୍ଣୁ । ଏହା ଆଦେଶ କଲୁ । ଅମାତ୍ୟ ଏହାଙ୍କ ବ୍ୟବସ୍ଥା କର ।

ଶୀଳଭଦ୍ର ।। ଦୂତ ! ଏହାଙ୍କୁ ଏଠାରୁ ନେଇଯାଅ ।

(ଦୂତମାନେ କର୍ଣ୍ଣାଟ ଜମିଦାରଙ୍କୁ ନେଇଯିବା ପରେ)

ବଜ୍ରବାହୁ ।। ପରବର୍ତ୍ତୀ ସମ୍ବାଦ ?

ଶୀଳଭଦ୍ର ।। ଗୌଡ଼ ଦେଶର ଜମିଦାର କହୁଛନ୍ତି ସେ ରାଜ୍ୟରେ ଭୋଜବିଦ୍ୟା ଓ ଗୁଣିବିଦ୍ୟା ବେଶୀ ଫଳପ୍ରଦ ।

ବଜ୍ରବାହୁ ।। ତାହାଙ୍କୁ ଏଠାରେ ଉପସ୍ଥିତ କରାଅ ।

ଶୀଳଭଦ୍ର ।। ଦୂତ ! ଯାଅ । ଗୌଡ଼ ଦେଶ ଜମିଦାରଙ୍କୁ ଏଠାକୁ ଆନୀତ କରାଅ–

ଗୌଡ଼ ଜମିଦାର ।। (ପ୍ରବେଶ କରି) ବୀର ଶ୍ରୀ ବୀରବର ପ୍ରବଳ ପରାକ୍ରମୀ ସମ୍ରାଟ ବଜ୍ରବାହୁ, କେ:ସି.ଆଇ.ଇ; ବି.ଏଲ୍; ପଦ୍ମଭୂଷଣ, ପରମବୀର ଚକ୍ର, ପିଏଚ୍.ଡି; ଡି ଲିଟ୍; ଏମ୍. ବି.ବି. ଏସ, ଏ. ଏମ୍, ଆଇ.ଇ, ଏସ.ଓ.ଏଲ; ଏମ୍.ଏମ୍. ଏସ୍ ପି.ଜି. ଏସ୍; ସଭାପତି ଆଇ.ଏ.ଏଫ୍, ପ୍ରତିଷ୍ଠାତା ବିଶ୍ୱେଶ୍ୱର ମନ୍ଦିର, ସଂପାଦକ ଆଇ.ସି.ଏସ୍.ଙ୍କର ଜୟ ହେଉ ।

ବଜ୍ରବାହୁ ।। ତୁମ୍ଭେ ଗୌଡ଼ଦେଶର ଜମିଦାର ?

ଗୌଡ଼ ଜମିଦାର ।। ପ୍ରଭୁ !

ବଜ୍ରବାହୁ ।। ଆମ୍ଭେ ଶୁଣିବାକୁ ପାଇଲୁ ସେଠାରେ ଭୋଜ ଆଉ ଗୁଣି ବିଦ୍ୟା ଖୁବ୍ ଚାଲିଛି ?

ଗୌଡ଼ ଜମିଦାର ।। ସନ୍ଧ୍ୟା ହେଲେ ରମଣୀମାନେ ଅଦୃଶ୍ୟ ହୋଇ ଯାଉଅଛନ୍ତି ପ୍ରଭୁ !

ବଜ୍ରବାହୁ ।। କ'ଣ ? ନେତ୍ରରେ ଦେଖୁ ଦେଖୁ ଅଦୃଶ୍ୟ ?

ଗୌଡ଼ ଜମିଦାର ।। ଚତୁଷ୍ପଦ ବିଶିଷ୍ଟ ଯାନରେ ବସି ଅଦୃଶ୍ୟ ହେଉଛନ୍ତି ଛାମୁ ! ଗୌଡ଼ ଦେଶରେ ପୁରୁଷମାନଙ୍କ ଅବସ୍ଥା କ୍ୟାଲାଙ୍କାରୀ ।

ବଜ୍ରବାହୁ ।। ରାଜ୍ୟର ଅନ୍ୟ ସବୁ ସଂବାଦ ଶ୍ରୀ ଛାମୁରେ ଜଣା କର ।

ଗୌଡ଼ ଜମିଦାର ।। ଛାମୁ, ଶୁଣିଲି ଆଜି ଶ୍ରୀ ଛାମୁଙ୍କ ଶାସନର ରଜତ ଜୟନ୍ତୀ ପାଳନ କରାଯାଉଅଛି । ହେଲେ ଆମ ଗୌଡ଼ ଦେଶ ଆଜି ଘୋର ସଂକଟାପନ୍ନ ଛାମୁ... କ୍ୟାଲାଙ୍କାରୀ ଅବସ୍ଥା... ରକ୍ଷା କରନ୍ତୁ ।

ବଜ୍ରବାହୁ ।। ଆମ୍ଭେ ନରବିଷ୍ଣୁ । ସବୁ ମାୟା ଆମ୍ଭଙ୍କୁ ଗୋଚର ଅଟଇ । ତୁମ୍ଭେ ଏଠାରେ କ୍ରନ୍ଦନ ନ କରି ଠିକ୍ ଭାବେ ରାଜ୍ୟର ଖବର ଜଣାକର ।

ଗୌଡ଼ ଜମିଦାର ।। ଗୁଣିବିଦ୍ୟା ପ୍ରଭୁ ! ଗୌଡ଼ ଦେଶର ସମସ୍ତ ପୁଷ୍କରିଣୀ ହଠାତ୍ ଶୁଷ୍କ ହୋଇଗଲେ ।

ବଜ୍ରବାହୁ ।। ଅମାତ୍ୟ ଶୀଳଭଦ୍ର ! ଏଥକୁ ଉପାୟ କିସ ?

ଶୀଳଭଦ୍ର ।। ପ୍ରଜାକୁଳଙ୍କୁ ଜଳ ଯୋଗାଇ ଦିଆଯିବା ପାଇଁ କୂପ ଖନନ କରାଯାଇଅଛି ।

ବଜ୍ରବାହୁ ।। ହାଃ,ହାଃ, ହାଃ, ହାଃ, ହାଃ ଆମ୍ଭେ ଜାଣୁ ଜମିଦାର ! ଦୀର୍ଘ ପଚିଶ ବର୍ଷ ଧରି ଆମ୍ଭେ ହସ୍ତିନା ନଗ୍ରରୁ ଏ ଦେଶର ପ୍ରଜାମାନଙ୍କ ପାଇଁ ସୁଶାସନର ବ୍ୟବସ୍ଥା କରି ଆସିଅଛୁ । ଆମ୍ଭେ ଥାଉଁ ଥାଉଁ କାହାରି କୌଣସି ଅସୁବିଧା ହେବା ଉଚିତ ନୁହଇ ।

ଶୀଳଭଦ୍ର ।। ଏହା ଶ୍ରୀ ଛାମୁଙ୍କ ଶାସନର ସୁବର୍ଣ୍ଣଯୁଗ ଚାଲିଅଛି । ପୁଷ୍କରିଣୀ ଶୁଷ୍କ ହୋଇଗଲେ କ୍ଷତି କ'ଣ ?

ଗୌଡ଼ ଜମିଦାର ।। ଗୁଣି ବିଦ୍ୟା ଦ୍ୱାରା ଏ ରାଜ୍ୟର ମତ୍ସ୍ୟମାନେ ପୁଷ୍କରିଣୀରୁ ଅଦୃଶ୍ୟ ।

ବଜ୍ରବାହୁ ।। ମତ୍ସ୍ୟ ଏକ ସୁଖାଦ୍ୟ । ଖାଲି ସେତିକି ନୁହଁ, ପୁଷ୍ଟିକର ମଧ । ନା' କ'ଣ ଅମାତ୍ୟ ?

ଶୀଳଭଦ୍ର ।। ଛାମୁଙ୍କର ସ୍ୱାସ୍ଥ୍ୟରକ୍ଷା ଜ୍ଞାନ ଅପରିସୀମ ।

ବଜ୍ରବାହୁ ।। (ନିଶରେ ହାତ ବୁଲାଇ) ହାଃ, ହାଃ, ହାଃ....

ଗୌଡ଼ ଜମିଦାର ।। ଛାମୁ, ରାଜ୍ୟରେ ମତ୍ସ୍ୟ ସଙ୍କଟ୍ ପଡ଼ିଅଛି ।

ବଜ୍ରବାହୁ ।। କିନ୍ତୁ ପୁଷ୍କରିଣୀ ଶୁଷ୍କ ହୋଇଯିବା ଦ୍ୱାରା ମତ୍ସ୍ୟମାନଙ୍କ ଅଦୃଶ୍ୟ ହେବାର ସଂପର୍କ କ'ଣ ? କେମନ୍ତେ ଏହା ଘଟିଲା ବର୍ଣ୍ଣନା କର ।

ଗୌଡ଼ ଜମିଦାର ।। ଛାମୁ, ଏହା ମତ୍ସ୍ୟ ରାଜ୍ୟର ମାୟା, ଆମ୍ଭେ ମାନବମାନଙ୍କୁ ଏହା ଅଗୋଚର ।

ବଜ୍ରବାହୁ ।। ଏଠାରେ ମଧ ଗୁଣି, ଭୋଜବିଦ୍ୟାର ପ୍ରୟୋଗ କରାଯାଇଅଛି ବୋଲି ତୁମ୍ଭର ବିଶ୍ୱାସ ?

ଗୌଡ଼ ଜମିଦାର ।। ଛାମୁ... ପୁରାଣରେ ମତ୍ସ୍ୟମାନେ ମତ୍ସ୍ୟ କନ୍ୟା ହେବା ଦୃଷ୍ଟାନ୍ତ ଅଛି ?

ବଜ୍ରବାହୁ ।। ଏହା ଦେବମାୟା ହୋଇପାରେ ।

ଗୌଡ଼ ଜମିଦାର ।। ହୋଇପାରେ ପ୍ରଭୁ ! କିନ୍ତୁ ଏଥିକୁ ଉପାୟ କ'ଣ ?

ବଜ୍ରବାହୁ ।। ଅମାତ୍ୟ ! ଏଥିକୁ ଉପାୟ କ'ଣ ?

ଶୀଳଭଦ୍ର ।। ଅଛି ଛାମୁ !

ବଜ୍ରବାହୁ ।। ବ୍ୟାଖ୍ୟା କର ।

ଶୀଳଭଦ୍ର ।। ଗୌଡ଼ ଦେଶ ଜମିଦାର ! ତୁମ୍ଭ ରାଜ୍ୟରୁ ପୁଷ୍କରିଣୀ ସିନା ଶୁଖିଗଲା । ନଦନଦୀମାନେ ତ ଯଥାରୀତି ପ୍ରବାହିତ ହେଉଅଛନ୍ତି ? ସେଠାରୁ ମତ୍ସ୍ୟ ଆଣି କେନ୍ଦ୍ରରେ ବିକ୍ରୟ କଲେ ?

ଗୌଡ଼ ଜମିଦାର ।। କେନ୍ଦ୍ରର ମତ୍ସ୍ୟ ସବୁ ମତ୍ସ୍ୟ ବିଭାଗ କର୍ମଚାରୀଙ୍କ ପାଇଁ ତ ଅତ୍ୟନ୍ତ ସ୍ୱଳ୍ପ ଛାମୁ ! ସାଧାରଣ ନାଗରିକମାନଙ୍କର ଅବସ୍ଥା କ୍ୟାଲାଙ୍କାରୀ.... ମାନେ.... ବଡ଼ ଦାରୁନ୍ ବ୍ୟାପାର...

ବଜ୍ରବାହୁ ।। ତେବେ ସମାଧାନର ଉପାୟ ଭାବାଯାଉ ।

ଶୀଳଭଦ୍ର ।। ଭାବାଯାଉ ।

ବଜ୍ରବାହୁ ।। ମତ୍ସ୍ୟମାନେ ଯଦି ପୁଷ୍କରିଣୀ ଶୁଷ୍କ ହେବା ଦ୍ୱାରା କନ୍ୟା ହୋଇଗଲେ–ତେବେ ଗୌଡ଼ ଦେଶର ସମସ୍ତ କନ୍ୟାଙ୍କୁ ନଦୀରେ ବୁଡ଼ାଇ ଦିଆଯାଉ । ସେମାନେ ପୁଣି ମତ୍ସ୍ୟ ହୋଇଯାଇ ପାରନ୍ତି ।

ଶୀଳଭଦ୍ର ।। ନିଶ୍ଚୟ ହେବେ, ଏଥିରେ ସନ୍ଦେହ ନାହିଁ ।

ବ୍ରହ୍ମଦତ୍ତ ।। ତିଳେ ମାତ୍ର ସନ୍ଦେହର ଅବକାଶ ନାହିଁ ।

ବଜ୍ରବାହୁ ।। ରମଣୀମାନେ ମତ୍ସ୍ୟ ହେବା ପାଇଁ ବାଧ୍ୟ । ଏହା ନରବିଷ୍ଣୁ ବଜ୍ରବାହୁଙ୍କର ଆଦେଶ ।

ଗୌଡ଼ ଜମିଦାର ।। (ବିକଳ ହୋଇ) ପ୍ରଭୁ, ଏହି ଆଦେଶ ପ୍ରତ୍ୟାହାର କରି ନିଅନ୍ତୁ ଛାମୁ ! ଗୌଡ଼ ଦେଶରେ ରମଣୀ ସଙ୍କଟ ଘଟିପାରେ ।

ବଜ୍ରବାହୁ ।। ସେଥିକୁ ଆମ୍ଭେ ପୁନରାୟ ବିଚାର କରିବା ।

ଗୌଡ଼ ଜମିଦାର ।। କିନ୍ତୁ ଏହି ଆଦେଶ ଦ୍ୱାରା ଆମ୍ଭ ଅବସ୍ଥା କ୍ୟାଲାଙ୍କାରୀ ହୋଇପାରେ ଛାମୁ !

ବଜ୍ରବାହୁ ॥ ଅମାତ୍ୟ ! ସେନାଧ୍ୟକ୍ଷଙ୍କୁ ଆଦେଶ କର, ସେ ଜମିଦାରଙ୍କୁ ଏହି କର୍ମରେ ସାହାଯ୍ୟ କରିବେ । ଦେଶରେ ମତ୍ସ୍ୟସଂକଟର ସମାଧାନ ପାଇଁ ଆମ୍ଭେ ଆଦେଶ କଲୁ— ରମଣୀମାନଙ୍କୁ ନଦୀରେ ବୁଡ଼ାଇ ଦିଆଯାଉ ।

ଗୌଡ଼ ଜମିଦାର ॥ ଛାମୁ ଏ ଆଦେଶ ପ୍ରତ୍ୟାହାର କରି ନିଅନ୍ତୁ । ଆମ୍ଭ ପ୍ରଜାକୁଳ ବିନା ମତ୍ସ୍ୟରେ ମଧ୍ୟ ଜୀବାତ୍ମା ବଞ୍ଚାଇ ରଖିପାରିବେ ପ୍ରଭୁ !

ବଜ୍ରବାହୁ ॥ କିପରି ? ମତ୍ସ୍ୟ ବିନା ଯେ ଜୀବନଧାରଣ ଅସମ୍ଭବ ?

ଗୌଡ଼ ଜମିଦାର ॥ ମାଂସ ଶିକାର ମିଳିପାରେ !

ବଜ୍ରବାହୁ ॥ ନା, ଯଦି ନ ମିଳିଲା ? ଆମ୍ଭ ପ୍ରଜାଗଣ ଯେ ଘୋର ଅସୁବିଧାର ସମ୍ମୁଖୀନ ହେବେ ! ମଣୋହି ରୁଚିକର ହେବ ନାହିଁ ।

ଗୌଡ଼ ଜମିଦାର ॥ ଆମ୍ଭ ଦେଶର ପ୍ରଜାଗଣ ଅବଶ୍ୟ ଏଥି ପୂର୍ବେ ତିନୋଟି ବିପ୍ଳବ କରି ସାରିଲେଣି ।

ବଜ୍ରବାହୁ ॥ ଆଶ୍ଚର୍ଯ୍ୟ ! ଆମ୍ଭଙ୍କୁ ଏହି ସମାଚାର ଅଗୋଚର ଥିଲା ।

ଗୌଡ଼ ଜମିଦାର ॥ ତିନୋଟି ବିପ୍ଳବରୁ ଅବଶ୍ୟ ଦ୍ୱିତୀୟଟି ଅଲଗା ।

ବଜ୍ରବାହୁ ॥ ଅର୍ଥାତ୍ ?

ଗୌଡ଼ ଜମିଦାର ॥ ଦ୍ୱିତୀୟଟି ସନ୍ଦେଶ ସଙ୍କଟ ପାଇଁ । ସନ୍ଦେଶ ନାମକ ମିଷ୍ଟାନ୍ନ ।

ବଜ୍ରବାହୁ ॥ ଗୋ ଦୁଗ୍ଧର ସଙ୍କଟ ?

ଗୌଡ଼ ଜମିଦାର ॥ ଶର୍କରା ମିଳୁନଥିଲା ଛାମୁ !

ବଜ୍ରବାହୁ ॥ ଆମ୍ଭେ ରଜତ ଜୟନ୍ତୀ ଉପଲକ୍ଷେ ଶର୍କରା ପ୍ରେରଣ କରିଅଛୁ ।

ଗୌଡ଼ ଜମିଦାର ॥ ସେ ସମସ୍ୟାର ସରକାରୀ ସମାଧାନ ହୋଇଯାଇଛି ।

ବଜ୍ରବାହୁ ॥ ଶୁଣି ପ୍ରୀତ ହେଲୁ । ଗୌଡ଼ ଦେଶର ପ୍ରଜାମାନଙ୍କର ମାନସିକ ସ୍ୱାସ୍ଥ୍ୟ କିପରି ଅଛି ?

ଗୌଡ଼ ଜମିଦାର ॥ ସେମାନେ ସହଜରେ ରାଗିପାରନ୍ତି, ପ୍ରେମ କରି ପାରନ୍ତି ଓ କାନ୍ଦି ପାରନ୍ତି ।

ବଜ୍ରବାହୁ ॥ ମତ୍ସ୍ୟ ସଂକଟବେଳେ ସେମାନେ ପ୍ରେମ କରନ୍ତି ନା କାନ୍ଦି ପାରନ୍ତି ?

ଗୌଡ଼ ଜମିଦାର ।। ହଠାତ୍ ସେମାନେ ପଶୁ ହୋଇଯାଆନ୍ତି ଓ ନରମାଂସ ଶିକାର କରନ୍ତି ।

ବଜ୍ରବାହୁ ।। ଘୋର ଅନ୍ୟାୟ । ଆମ୍ଭ ସୈନ୍ୟ ଛାଉଣୀ ସେଠାରେ ଅଛି କି ନାହିଁ ?

ଗୌଡ଼ ଜମିଦାର ।। ଅଛନ୍ତି ଛାମୁ । ତମ୍ବୁ ପକାଇ ଅଛନ୍ତି । କିନ୍ତୁ ଏହି କ୍ଷୁଧିତ ବ୍ୟାଘ୍ରମାନେ ରାସ୍ତା ଓ ଜନପଦମାନଙ୍କରେ ବହୁ ସୈନ୍ୟଙ୍କୁ ମାରି ସେମାନଙ୍କର ମାଂସ ଭକ୍ଷଣ କଲେଣି ।

ବଜ୍ରବାହୁ ।। ତୁମ୍ଭେ କି ଶାସନ କରୁଅଛ ?

ଗୌଡ଼ ଜମିଦାର ।। ଆମ୍ଭର ଅଭିଷେକ ପରେ ବହୁସଂଖ୍ୟାରେ ନରଖାଦକମାନଙ୍କୁ କ୍ୟାଲାଙ୍କାରୀ କଲୁଣି ।

ବଜ୍ରବାହୁ ।। ଆଉ କେତେ ବାକି ଅଛନ୍ତି ?

ଗୌଡ଼ ଜମିଦାର ।। ଅନେକ ସହସ୍ର । ଅନେକ ଅର୍ବୁଦ । ପ୍ରଜାମାନଙ୍କୁ ଆପଣ ହିଁ ବଞ୍ଚାଇ ପାରିବେ ଛାମୁ ।

ବଜ୍ରବାହୁ ।। ଅମାତ୍ୟ ! ଗୌଡ଼ ଦେଶର ଜମିଦାର ମଧ ଜଣେ ନରଖାଦକ ହୋଇପାରନ୍ତି ।

ଶୀଳଭଦ୍ର ।। ହୋଇ ପାରନ୍ତି ଛାମୁ ।

ବଜ୍ରବାହୁ ।। ପ୍ରଥମେ ତାଙ୍କୁ ବନ୍ଦୀ କରାଯାଉ ।

ଗୌଡ଼ ଜମିଦାର ।। ଛାମୁ ! କ୍ୟାଲାଙ୍କାରୀ !!

ବଜ୍ରବାହୁ ।। ଆମ୍ଭ ସଂଶୟ ଦୂର ହେଲା ପର୍ଯ୍ୟନ୍ତ ତୁମ୍ଭେ ବନ୍ଦୀ ।

ଗୌଡ଼ ଜମିଦାର ।। ଛାମୁ—କ୍ଷମା କରି ଦିଅନ୍ତୁ ।

ବଜ୍ରବାହୁ ।। ସେନାଧକ୍ଷ ! ଦୂତ ! ଏହାକୁ ବନ୍ଦୀ କରି ରଖାଯାଉ ।

ଗୌଡ଼ ଜମିଦାର ।। ଛାମୁ... ମୋ' ଅବସ୍ଥା କ୍ୟାଲାଙ୍କାରୀ ହେଇଯିବ ଛାମୁ.... ଛାମୁ....

(ତାଙ୍କୁ ସୈନ୍ୟଗଣ ବାନ୍ଧି ଘୋଷାରି ନେଲାବେଳେ ଦୂତ ଆସିଛି ।)

ଦୂତ ।। କ୍ଷମା କରିବେ ଛାମୁ ! କଳିଙ୍ଗ ରାଜକୁମାର ଆପଣଙ୍କ ଦର୍ଶନାଭିଳାଷୀ ।

ବଜ୍ରବାହୁ ।। କହିଦିଅ—ହସ୍ତିନାପୁର ସମ୍ରାଟଙ୍କୁ ଦେଖା କରିବା କିଛି ସହଜ କଥା ନୁହଁ । କଅଣ ଭେଟି ଆଣିଛନ୍ତି ?

ଦୂତ ॥ ଛାମୁଙ୍କ ଶ୍ରୀଅଙ୍ଗ ପାଇଁ ରୋପ୍ୟ ତାରକସି ଅଳଙ୍କାର ଓ ମହାରାଣୀଙ୍କ ପାଇଁ ଦୁଇଟି ତନ୍ତବୁଣା ବସ୍ତ୍ର, ଯାହା ଗୋଟିଏ ସୁବର୍ଣ୍ଣ ମୁଦ୍ରିକା ଭିତର ଦେଇ ଯାତାୟାତ କରିପାରେ ।

ବଜ୍ରବାହୁ ॥ ବର୍ତ୍ତମାନ ଆମ୍ଭ ମଣୋହି ସମୟ ହୋଇଗଲା । ତାହାଙ୍କୁ ରାତ୍ରିର ଚତୁର୍ଥ ପ୍ରହରରେ ଦେଖା କରିବାକୁ କୁହ ଏବଂ ଉପହାର ଗ୍ରହଣ କର ।

କଳିଙ୍ଗ ରାଜକୁମାର ॥ (ହଠାତ୍ ପ୍ରବେଶ କରି) ବୀର ଶ୍ରୀ ବୀରବର ପ୍ରବଳ ପରାକ୍ରମୀ ସମ୍ରାଟ ବଜ୍ରବାହୁଙ୍କ ଦରବାରକୁ ବିନାନୁମତିରେ ପ୍ରବେଶ କରିଥିବା ଯୋଗୁଁ କଳିଙ୍ଗ ରାଜକୁମାର କ୍ଷମା ପ୍ରାର୍ଥନା କରୁଅଛି ।

ବଜ୍ରବାହୁ ॥ କି ସମ୍ବାଦ ପ୍ରକାଶ କର । ଆମ୍ଭେ କ୍ଷମା କଲୁ ।

କଳିଙ୍ଗ ରାଜକୁମାର ॥ ଛାମୁ ! କଳିଙ୍ଗରେ ଘୋର ରାଜନୈତିକ ଅସ୍ଥିରତା ।

ବଜ୍ରବାହୁ ॥ କାହିଁ ପାଇଁ ?

କଳିଙ୍ଗ ରାଜକୁମାର ॥ ଜରଦ୍‌ଗବ ନେତାମାନେ ସିଂହାସନ ଚାହୁଁଛନ୍ତି ।

ବଜ୍ରବାହୁ ॥ ଖାଲି ଚାହିଁଲେ ବଜ୍ରବାହୁଙ୍କ ରାଜ୍ୟରେ କିଛି ମିଳେନା ।

କଳିଙ୍ଗ ରାଜକୁମାର ॥ ରାଜ୍ୟରେ ସଭା ସମିତି କିଛି କରାଇ ଦେଉ ନାହାନ୍ତି ।

ବଜ୍ରବାହୁ ॥ ଚିତ୍କାର କରି ଭାଷଣ ଦିଅ ।

କଳିଙ୍ଗ ରାଜକୁମାର ॥ ସାରଗର୍ଭକ ଭାଷଣ ଦେଲାବେଳେ ସଭାସମିତିରେ ବୃଦ୍ଧମାନେ ଷଣ୍ଢ ପୂରାଇ ଦେଉଅଛନ୍ତି ।

ବଜ୍ରବାହୁ ॥ ସେମାନଙ୍କୁ ମୋ ପାଖରେ ହାଜିର କରାଇ ଦିଅ ।

କଳିଙ୍ଗ ରାଜକୁମାର ॥ କିନ୍ତୁ ସେମାନେ କ'ଣ ରାଜି ହେବେ ଛାମୁ ? ରାଜନୈତିକ ଦୋଷ ଯେ ଦୋଷ ନୁହେଁ !

ବଜ୍ରବାହୁ ॥ ଶୁଣିଲି ପଶ୍ଚିମ ଦିଗରୁ ଗୋଟିଏ ସିଂହ ଆଣି ସେମାନେ ପୋଷୁଛନ୍ତି, ଏ କଥା କ'ଣ ସତ ?

କଳିଙ୍ଗ ରାଜକୁମାର ॥ କଳିଙ୍ଗ ଅରଣ୍ୟରେ ସେ ସିଂହ କିଛି ଦିନ ରାଜା ଥିଲା । ବହୁ ନିରୀହ ଶଶକ ଓ ମୃଗଙ୍କୁ ମାରିଅଛି । ବର୍ତ୍ତମାନ ଆମ୍ଭଙ୍କୁ ମାରିବା ପାଇଁ ବସିଅଛି ।

ବଜ୍ରବାହୁ ॥ ଯଥାଶୀଘ୍ର ସେ ସିଂହର ଲାଞ୍ଜ କାଟିଆଣି ଆମ୍ଭ ଦରବାରରେ ଜମା ଦିଅ ।

କଳିଙ୍ଗ ରାଜକୁମାର ॥ ଶ୍ରୀ ଛାମୁଙ୍କ ଇଚ୍ଛା !

ବଜ୍ରବାହୁ ॥ ଅନ୍ୟ ସମ୍ବାଦ କୁହ ।

କଳିଙ୍ଗ ରାଜକୁମାର ॥ ରାଜ୍ୟର ଫସଲ ଓ ସବୁଜ କ୍ଷେତ ସବୁ ହଠାତ୍ ପ୍ରସ୍ତର ପାଲଟି ଗଲେ ।

ବଜ୍ରବାହୁ ॥ ଆଶ୍ଚର୍ଯ୍ୟ !

କଳିଙ୍ଗ ରାଜକୁମାର ॥ ଆକାଶରୁ ହ୍ରେଷାରବ ଶୁଭିଲାଣି ।

ବଜ୍ରବାହୁ ॥ ତା' ପରେ ?

କଳିଙ୍ଗ ରାଜକୁମାର ॥ ରାଜ୍ୟରେ ସବୁ ଆଲୋକ ନୀଳବର୍ଣ୍ଣ ଦିଶୁଅଛି ।

ବଜ୍ରବାହୁ ॥ ଆଲୋକକୁ ଗୁଳିମାର । ଆମ୍ଭେ ଆଦେଶ କରିଅଛୁ– ଦେଶରୁ ସମସ୍ତ ଆଲୋକ ଲିଭିଯିବ । ଅନ୍ଧାର ଭିତରେ ଏ ଦେଶର ରାଜକାର୍ଯ୍ୟ ପରିଚାଳିତ ହେବ ।

କଳିଙ୍ଗ ରାଜକୁମାର ॥ ଛାମୁ ! ବିନା ମେଘରେ ବର୍ଷା ହେଉଅଛି ।

ବଜ୍ରବାହୁ ॥ ବିନା ମେଘରେ ବର୍ଷା ?

କଳିଙ୍ଗ ରାଜକୁମାର ॥ ପ୍ରଭୁ ! ରାଜ୍ୟରେ ହଠାତ୍ ବାତ୍ୟା ଓ ବନ୍ୟା । ଇତିହାସ ପ୍ରସିଦ୍ଧ କଳିଙ୍ଗ ରାଜ୍ୟ ଛାରଖାର ହୋଇଗଲା ପ୍ରଭୁ !

ବଜ୍ରବାହୁ ॥ ଏହା ଏକ ଗଭୀର ସମସ୍ୟା ।

କଳିଙ୍ଗ ରାଜକୁମାର ॥ ବିନା ମେଘରେ ବର୍ଷା ହେଲେ କେଉଁପରି ବନ୍ୟା ନିୟନ୍ତ୍ରଣ କରିବା ? ସମଗ୍ର କଳିଙ୍ଗ ଜଳମଗ୍ନ–

ବଜ୍ରବାହୁ ॥ ଓଃ !!

କଳିଙ୍ଗ ରାଜକୁମାର ॥ ଛାମୁ, ଆପଣଙ୍କ ପଚିଶବର୍ଷ ରାଜତ୍ୱ କାଳରେ ପଞ୍ଚଷଠୀ ଥର ବନ୍ୟା ହେଲାଣି ।

ବଜ୍ରବାହୁ ॥ ପଞ୍ଚଷଠୀ ଥର ? ଏହା ଆମ୍ଭର କର୍ଣ୍ଣକୁ ଗୋଚର ନଥିଲା କିପରି ? ଅମାତ୍ୟ–

ଶୀଳଭଦ୍ର ॥ ଏହି ନଗଣ୍ୟ କଥା ପୁଣି ଶ୍ରୀ ଛାମୁ ଶୁଣିଥାଆନ୍ତେ ?

ବଜ୍ରବାହୁ ॥ ନା, ଏତଦ୍ୱାରା ଆମ୍ଭେ ଦୁଃଖ ପ୍ରକାଶ କଲୁ କଳିଙ୍ଗ–ରାଜକୁମାର ! ଏହି ହସ୍ତିନାପୁରର ପ୍ରମୋଦଶାଳା ବୋଲି ଆମ୍ଭେ ନୀରବରେ ଦୁଃଖ ପ୍ରକାଶ କରି ସମବେଦନା ଜଣାଇଲୁ । ବିଚାରାଳୟ ହୋଇଥିଲେ ଅଶ୍ରୁ ବିସର୍ଜନ କରିଥାଆନ୍ତୁ ।

ଶୀଳଭଦ୍ର ॥ ଶ୍ରୀ ଛାମୁଙ୍କ ମଣୋହି ସମୟ ହୋଇଗଲାଣି ।

ବଜ୍ରବାହୁ ।। ତଥାପି ଆମ୍ଭେ ପ୍ରଜାବତ୍ସଳ ରାଜା ବୋଲି ଏ ଦେଶରେ ଆମ୍ଭର ଖ୍ୟାତି ଅଛି । ଆମ୍ଭେ କଳିଙ୍ଗ ରାଜକୁମାରଙ୍କଠାରୁ ବର୍ତ୍ତମାନ ଜ୍ଞାତ ହେଲୁଁ ଯେ ସେଠାରେ ପଞ୍ଚଷଠୀ ଥର ବନ୍ୟା ହେଲାଣି ।

ଶୀଳଭଦ୍ର ।। ସେଠାରେ ପୁଷ୍କରିଣୀରେ ମଧ ବନ୍ୟା ହୁଏ ଛାମୁ !

ବଜ୍ରବାହୁ ।। ତା'ହେଲେ ଏକ ଶିଳାଲେଖ ସ୍ଥାପନ କର ! ହସ୍ତିନାପୁର ସିଂହଦ୍ୱାର ଆଗରେ ଏକ ବିରାଟ ସ୍ତମ୍ଭ ତିଆରି ହେବ ! ତଥିପରେ କଳିଙ୍ଗ ରାଜ୍ୟର ପଞ୍ଚଷଠୀ ଥର ବନ୍ୟା–ଚିତ୍ର ଖୋଦିତ ହେବ ।

ଶୀଳଭଦ୍ର ।। ଶ୍ରୀଛାମୁଙ୍କର ଖ୍ୟାତି ଦିଗ ବିଦିଗ ପ୍ରସାରିତ ହେବ ।

ବ୍ରହ୍ମଦତ୍ତ ।। ଅନେକ ଯୁଗ ଧରି ଜନସମାଜ ଜାଣିବେ ରାଜା ବଜ୍ରବାହୁ କଳିଙ୍ଗ ରାଜ୍ୟର ବନ୍ୟା ପାଇଁ ଦୁଃଖ ପ୍ରକାଶ କରିଥିଲେ ।

ବିଦୂଷକ ନଂ ୧ ।। ଛାମୁଙ୍କ ସମବେଦନା ଦେଖି ଆମ୍ଭ ଆଖିରୁ ଅଶ୍ରୁ ନିଗିଡ଼ି ପଡୁଛି ।

ବିଦୂଷକ ନଂ ୨ ।। ଆମ୍ଭେ ଏହିପରି ଜଣେ ପ୍ରଜାବତ୍ସଳ ରାଜାଙ୍କ ସମୀପରେ ବର୍ତ୍ତମାନ ଉପବେଶନ କରିବା ସୌଭାଗ୍ୟ ପାଇଛୁ ବୋଲି ଭାବି ଭାବି କାନ୍ଦି ସାରିଲୁଣି ।

କଳିଙ୍ଗ ରାଜକୁମାର ।। ଏହାଦ୍ୱାରା ଯଦି ବନ୍ୟାବ୍ୟାଧି ହସ୍ତିନାପୁରକୁ ସଂକ୍ରମିତ ହୁଏ ?

ବଜ୍ରବାହୁ ।। ସାଧୁ ଉପଦେଶ କଳିଙ୍ଗ ରାଜକୁମାର ! ତୁମ୍ଭେ ବର୍ତ୍ତମାନ ଆସିପାର । ଅମାତ୍ୟ । ବନ୍ୟା ଏକ ବ୍ୟାଧି !

ବ୍ରହ୍ମଦତ୍ତ ।। ଖାଲି ବ୍ୟାଧି ନୁହେଁ– ଦୈବବ୍ୟାଧି ! ପୁରାଣରେ ବର୍ଣ୍ଣନା କରାଯାଇଛି ବନ୍ୟା ହେଲେ ଏ ସୃଷ୍ଟି ପ୍ରଳୟ ହୁଏ....

ବଜ୍ରବାହୁ ।। ହାଃ–ହାଃ–ହାଃ–ହାଃ ହାଃ ! ଅମାତ୍ୟ ! ଆମ୍ଭ ସୃଷ୍ଟି ଅନ୍ୟ ସୃଷ୍ଟିଠାରୁ ଭିନ୍ନ । ଆମ୍ଭେ ନରବିଷ୍ଣୁ । ଏହାର ବିହିତ ପ୍ରତିକାର କରିବୁଁ ।

ବିଦୂଷକ ନଂ ୧ ।। କିଏ ଜାଣେ ବର୍ତ୍ତମାନ କଳିଙ୍ଗ ରାଜକୁମାରଙ୍କ ମୁଖରୁ ବନ୍ୟା ଖବର ଶୁଣି ଏ ରାଜ୍ୟରେ କେଉଁଠି ବନ୍ୟା ହେବଣି !

ବିଦୂଷକ ନଂ ୨ ।। କିଏ ଜାଣେ, ହସ୍ତିନାପୁର ରାଜ୍ୟ ଉପରକୁ ବନ୍ୟା ମାଡ଼ି ଆସୁଛି !

ବଜ୍ରବାହୁ ।। ବନ୍ୟା କାହିଁ ? ସମୁଦ୍ର କାହିଁ ?
ବିଦୂଷକ ନଂ ୧ ।। ହସ୍ତିନାପୁରର ସମସ୍ତ ନଦନଦୀ ବର୍ତ୍ତମାନ ପାଗଳ ହୋଇ ଯାଇଛନ୍ତି ।
ବିଦୂଷକ ନଂ ୨ ।। ବନ୍ୟା, ବାତ୍ୟା ଜଳ ।
ବିଦୂଷକ ନଂ ୧ ।। ଜଳ ଅତଳ ଜଳ ।
ବିଦୂଷକ ନଂ ୨ ।। ମିଳୁତ ନାହିଁ ଜଳ ।
ବିଦୂଷକ ନଂ ୧ ।। ଧରି ଥୟ ଧର ।
ବିଦୂଷକ ନଂ ୨ ।। ଲାଗୁଛି ମତେ ଡର ।
ବିଦୂଷକ ନଂ ୧ ।। ତ୍ରାହି କର କର ।
ବିଦୂଷକ ନଂ ୨ ।। ବନ୍ୟା, ବାତ୍ୟା, ଜଳ ।
ବିଦୂଷକ ନଂ ୧ ।। ବରଷା ଝର ଝର ।
ବିଦୂଷକ ନଂ ୨ ।। ଭାସିଣ ଗଲା ଘର ।
ବିଦୂଷକ ନଂ ୧ ।। ଘର ନୁହେଁ ନର ।
ବିଦୂଷକ ନଂ ୨ ।। ଧର ଧର ଧର ।
ବିଦୂଷକ ନଂ ୧ ।। ଭାଙ୍ଗିଲା ମନ୍ଦିର ।
ବିଦୂଷକ ନଂ ୨ ।। ଭାଙ୍ଗିଲା କୁଣ୍ଡର ।
ବିଦୂଷକ ନଂ ୧ ।। ଭାସିଲା ଫସଲ ।
ବିଦୂଷକ ନଂ ୨ ।। ଭାସିଗଲା ବିଲ ।
ବିଦୂଷକ ନଂ ୧ ।। ଭାଙ୍ଗିଲା ଇସ୍କୁଲ ।
ବିଦୂଷକ ନଂ ୨ ।। ଭାସିଲା ସହର ।
ବିଦୂଷକ ନଂ ୧ ।। ହସ୍ତିନା ନଗର ।
ବିଦୂଷକ ନଂ ୨ ।। ନମିଳେ ଆହାର ।
ବିଦୂଷକ ନଂ ୧ ।। ପିଅ ଖାଲି ଜଳ ।
ବିଦୂଷକ ନଂ ୨ ।। ନ ପିଇଲେ ମର ।
ବିଦୂଷକ ନଂ ୧ ।। ଭାସିଗଲା ଘର ।
ବିଦୂଷକ ନଂ ୨ ।। କର କୋଠାଘର ।
ବିଦୂଷକ ନଂ ୧ ।। ଭୋକରେ ବିକଳ ।
ବିଦୂଷକ ନଂ ୨ ।। ମିଳିବ ଛତର ।
ବିଦୂଷକ ନଂ ୧ ।। ହସ୍ତିନା ନଗର ।
ବିଦୂଷକ ନଂ ୨ ।। ହେଲା ଛାରଖାର ।

ବଜ୍ରବାହୁ ।। (ଚିତ୍କାର କରି ଉଠିଲେ) ନା–

ବିଦୂଷକ ନଂ ୧ ।। ଦେଖ ପାଳିଆ ଭାଇ—ହସ୍ତିନା ନଗ୍ର କେମିତି ବନ୍ୟାରେ ଭାସି ଯାଉଛି ।

ବିଦୂଷକ ନଂ ୨ ।। ବନ୍ୟା–ବନ୍ୟା–ବନ୍ୟା–ବନ୍ୟା !!

ବଜ୍ରବାହୁ ।। ଆମ୍ଭେ ପ୍ରଜାବତ୍ସଳ ରାଜା । ଏହାର ପ୍ରତିକାର କରିବୁ । ଅମାତ୍ୟ ।

ଶୀଳଭଦ୍ର ।। ଛାମୁ !

ବ୍ରହ୍ମଦତ୍ତ ।। ଛାମୁ !

ବଜ୍ରବାହୁ ।। କେଉଁପରି ଆମ୍ଭ ସାମ୍ରାଜ୍ୟରୁ ବନ୍ୟା ନିୟନ୍ତ୍ରଣ କରାଯିବ ?

ଶୀଳଭଦ୍ର ।। କେଉଁପରି ପ୍ରଭୁ ?

ବ୍ରହ୍ମଦତ୍ତ ।। କେଉଁପରି ପ୍ରଭୁ ??

ବଜ୍ରବାହୁ ।। ଆମ୍ଭେ ଅମାତ୍ୟମାନଙ୍କୁ ପୃଚ୍ଛା କରୁଅଛୁ ।

ଶୀଳଭଦ୍ର ।। } ଯଥା ଆଜ୍ଞା ଛାମୁ ! ଛାମୁ ଯେଉଁପରି ଆଦେଶ ଦେବେ
ବ୍ରହ୍ମଦତ୍ତ ।। } ଆମ୍ଭେ ସେହିପରି ପାଳନ କରିବୁ ।

ବଜ୍ରବାହୁ ।। ଆଚ୍ଛା ଅମାତ୍ୟ ! ବନ୍ୟା କେଉଁଠି ହୁଏ ?

ଶୀଳଭଦ୍ର ।। ନଦୀରେ ଛାମୁ !

ବ୍ରହ୍ମଦତ୍ତ ।। ପୁଷ୍କରିଣୀରେ ମଧ ହୋଇପାରେ ।

ବଜ୍ରବାହୁ ।। ଯଦି ହସ୍ତିନାପୁରରୁ ସବୁ ନଦନଦୀ ପୁଷ୍କରିଣୀ ଉଠିଯାଏ ?

ଶୀଳଭଦ୍ର ।। ଏହା କେମନ୍ତ ସମ୍ଭବ ଛାମୁ ?

ବ୍ରହ୍ମଦତ୍ତ ।। ନଦ–ନଦୀ–ପୁଷ୍କରିଣୀ ସବୁ ଅନୁଷ୍ଠାନ ନୁହନ୍ତି । ପ୍ରକୃତିର ଦାନ ।

ବଜ୍ରବାହୁ ।। ଆମ୍ଭେ ନରବିଷ୍ଣୁ । ପ୍ରକୃତିକୁ ଉପଯୁକ୍ତ ଶାସ୍ତି ଦେବୁ । ଆମ୍ଭେ ଏତଦ୍ୱାରା ଆଦେଶ କରୁଅଛୁ ଯେ ଏ ରାଜ୍ୟର ସମସ୍ତ ପୁଷ୍କରିଣୀ ଓ ନଦ ନଦୀ ପୋତି ଦିଆଯିବ ।

ବ୍ରହ୍ମଦତ୍ତ ।। ଛାମୁ, ଭାସିଗଲା–ବୁଡ଼ିଗଲା ।

ବଜ୍ରବାହୁ ।। ହାଃ–ହାଃ–ହାଃ–ଆଉ ବୁଡ଼ି ପାରିବ ନାହିଁ– ଆଉ ଭାସି ପାରିବ ନାହିଁ । ମୁଁ ସବୁ ନଦୀ ପୋତି ଦେଇଛି ।

ବ୍ରହ୍ମଦତ୍ତ ।। ନା, ଛାମୁ ତା' ନୁହେଁ ! ନଦୀ ଯଦି ପୋତି ହୋଇଯାଏ– ଜଳ ବିନା ଜନବସତି ଲୋପ ପାଇଯିବ ।

ଶୀଳଭଦ୍ର ॥ ନଦୀ, ପୁଷ୍କରିଣୀ ଯଦି ପୋତା ହୋଇଯାଏ– ତା' ହେଲେ ଫସଲର ଘୋର ନଷ୍ଟ ଘଟିତ ହେବ । କାରଣ କୃଷି ପାଇଁ ଜଳ ପ୍ରୟୋଜନ ।

ବଜ୍ରବାହୁ ॥ କୂପ ଖନନ କର । କିନ୍ତୁ ମୋର ଆଦେଶ ଏ ନଦୀମାନଙ୍କୁ ହତ୍ୟା କର । ଏମାନେ ଅବାଧ । ରାଜା ବଜ୍ରବାହୁଙ୍କ ଶାସନ କାଳରେ କେହି ଅବାଧ ହୋଇ ନାହାନ୍ତି । ଅଥଚ ପ୍ରଥମଥର ପାଇଁ ଆମ୍ଭେ ଶୁଣିବାକୁ ପାଇଲୁ ନଦନଦୀମାନେ ଆମ୍ଭ ସାମ୍ରାଜ୍ୟରେ ବନ୍ୟା ସୃଷ୍ଟି କରୁଅଛନ୍ତି ।

ଶୀଳଭଦ୍ର ॥ କିନ୍ତୁ ଏତେ ନଦ ନଦୀ ପୋତାଯିବ କେଉଁପରି ?

ବଜ୍ରବାହୁ ॥ ଆମ୍ଭ ରାଜ୍ୟରେ ଅସାଧ କିଛି ନାହିଁ । ଅସମ୍ଭବ କ'ଣ ଆମ୍ଭେ ଜାଣିନାହୁଁ ।

ବ୍ରହ୍ମଦତ୍ତ ॥ କିନ୍ତୁ କିଛି ସମୟ ପୂର୍ବେ କଳିଙ୍ଗ ରାଜକୁମାର କହିଲେ ଯେ ସେଠାରେ ବିନା ମେଘରେ ବର୍ଷା ହେଉଛି । ଆପଣ ନଦନଦୀ ପୋତି ଦେଲେ ମଧ ବନ୍ୟା ହୋଇପାରେ ଛାମୁ !

ବଜ୍ରବାହୁ ॥ ତା' ହେଲେ ଉପାୟ ?

ଶୀଳଭଦ୍ର ॥ ମୂଷଳଧାରାରେ ବର୍ଷା ।

ବ୍ରହ୍ମଦତ୍ତ ॥ ବିନା ମେଘରେ ମୂଷଳ ଧାରା ।

ବଜ୍ରବାହୁ ॥ ମୁଁ ଜଳମାନଙ୍କୁ ଶାସ୍ତି ଦେବି । ସେମାନେ ମୋ ରାଜ୍ୟର ବିପ୍ଳବୀ ।

ବ୍ରହ୍ମଦତ୍ତ ॥ କିନ୍ତୁ ଏହା କ'ଣ ସମ୍ଭବ ଛାମୁ ?

ବଜ୍ରବାହୁ ॥ କାହିଁକି ସମ୍ଭବ ନୁହେଁ ? ଆମ୍ଭ ରାଜ୍ୟର ଆକାଶରେ ଏକ ଛାତ ପକାଇ ଦିଆଯିବ ।

ବ୍ରହ୍ମଦତ୍ତ ॥ }
ଶୀଳଭଦ୍ର ॥ } ଛାମୁ !

ବଜ୍ରବାହୁ ॥ ହଁ, ହସ୍ତିନା ରାଜ୍ୟର ପଞ୍ଚଶତ ସହସ୍ର ଯୋଜନ ଆକାଶ ଉପରେ ଏକ ଛାତ ନିର୍ମାଣ କରାଯିବ । ତେଣିକି ଯେତେ ମୂଷଳଧାରା ହେଉନା କାହିଁକି ହସ୍ତିନା ସାମ୍ରାଜ୍ୟରେ ଯେମିତି ବିନ୍ଦୁଏ ଜଳ ନ ପଡ଼େ ।

ବ୍ରହ୍ମଦତ୍ତ ।। ପଞ୍ଚଶତ ସହସ୍ର ଯୋଜନର ଆକାଶ... ତା' ତଳେ ଏକ ଛାତ । କେତେ ଅର୍ଥ ଯେ ବିନିଯୋଗ ହେବ ତା'ର କିଛି କଳନା ନାହିଁ ଛାମୁ !

ବଜ୍ରବାହୁ ।। ଆମ୍ଭର ସମସ୍ତ ଭଣ୍ଡାର ଶେଷ ହୋଇଯାଉପଛେ— ଆପତ୍ତି ନାହିଁ । କିନ୍ତୁ, ଆମ୍ଭେ ପ୍ରଜାବତ୍ସଳ ରାଜା, ବନ୍ୟାକୁ ନିଶ୍ଚେ ନିୟନ୍ତ୍ରିତ କରିବୁଁ ।

ବ୍ରହ୍ମଦତ୍ତ ।। କିନ୍ତୁ ଶ୍ରୀଛାମୁଙ୍କ ଭଣ୍ଡାରରେ ଏତେ ଅର୍ଥ ନାହିଁ ।

ଶୀଳଭଦ୍ର ।। ଆକାଶ ତଳେ ଛାତ ତିଆରି ପାଇଁ ବହୁ ସଂଖ୍ୟାରେ କାରିଗର ଆବଶ୍ୟକ ।

ବଜ୍ରବାହୁ ।। ସମଗ୍ର ରାଜ୍ୟରେ ଧେଣ୍ଡୁରା ପିଟି ଜଣାଇଦିଅ । ହସ୍ତିନାପୁର ସାମ୍ରାଜ୍ୟର ସବୁ କାରିଗର ଆମର ଏହି ଆକାଶଛତା କାର୍ଯ୍ୟରେ ଯୋଗଦେବେ ।

ବ୍ରହ୍ମଦତ୍ତ ।। ଆପଣଙ୍କ ମସ୍ତିଷ୍କ ଆଉ ଠିକ୍ କାମ କରୁନାହିଁ ମହାରାଜ– ଆପଣଙ୍କୁ କ୍ଷୁଧା ଅନୁଭୂତ ହେଉଛି । ଆପଣ ବରଂ ମଣୋହି ଉପଲକ୍ଷେ ଯାଆନ୍ତୁ–

ବଜ୍ରବାହୁ ।। ସାଧୁ ! ତୁମ୍ଭେ ଆମର ମନକଥା ଜାଣିପାରୁଅଛ । ସମୟ ଅନେକ ହେଲାଣି । ଅପେକ୍ଷା କରିଥିବା ଲୋକମାନଙ୍କୁ କହିଦିଅ—କାଲି ସନ୍ଧ୍ୟାରେ ସେମାନେ ଆମ୍ଭ ଦର୍ଶନ ପାଇବେ ।

ଶୀଳଭଦ୍ର ।। କେଉଁଠି ଛାମୁ ?

ବଜ୍ରବାହୁ ।। ଏଇଠି—ଏଇ ପ୍ରମୋଦଶାଳାରେ । ଆଜିଠାରୁ ଆମ୍ଭ ଦେଶର ସମସ୍ତ ରାଜକାର୍ଯ୍ୟ ଏଇ ପ୍ରମୋଦଶାଳାରେ ଅନୁଷ୍ଠିତ ହେବ ।

ଶୀଳଭଦ୍ର ।। ଏହା ଯେ ମହାରାଣୀଙ୍କ ପ୍ରମୋଦଶାଳା !

ବଜ୍ରବାହୁ ।। ରାଜକାର୍ଯ୍ୟ ଏକ ଗୋପନ କାର୍ଯ୍ୟ ନୁହେଁ । ସେ ରାଜକାର୍ଯ୍ୟ ପରିଚାଳିତ ହେବା ସମୟରେ ଏଠାକୁ ଆସି ପାରନ୍ତି । ତା' ହେଲେ ଆଜି ପାଇଁ ରାଜକାର୍ଯ୍ୟ ଏତିକିରେ ବନ୍ଦ କରାଯାଉ । ବିଦୂଷକ ଦ୍ୱୟ ! ଆପଣମାନଙ୍କ ଉପରେ ପ୍ରୀତ ହୋଇ ଆମ୍ଭେ ଏତଦ୍ୱାରା ଆଦେଶ କରୁଅଛୁଁ ଯେ ଆମ୍ଭ ମଣୋହି ସଭାରେ ଉପବେଶନ କରି ବିଦୂଷକ ଦ୍ୱୟ ଆମ୍ଭ

ମନୋରଞ୍ଜନ କରନ୍ତୁ । (ବଜ୍ରବାହୁ ଉଠି ଚାଲିଗଲେ । ତାଙ୍କ ଆଗରେ ମୃତ୍ତିକା ଭାଣ୍ଡଧାରୀ ଓ ପଛେ ପଛେ ଚାମର ଆଲଟ୍‌ବାଲା ଏବଂ ବିଦୂଷକ ଦ୍ୱୟ—ଯେଉଁମାନେ ଚାଲିଲେ ସର୍କସର ଜୋକର ଭଳି ଦିଶନ୍ତି । ମଞ୍ଚ ଉପରେ ବର୍ତ୍ତମାନ ସୋମରସ ପାନ, ପଶାଖେଳ ଇତ୍ୟାଦିରେ ମନ୍ତ୍ରୀଦ୍ୱୟ ବ୍ୟସ୍ତ ରହିବେ)

ଶୀଳଭଦ୍ର ॥ ବନ୍ଧୁ ବ୍ରହ୍ମଦତ୍ତ । ବାୟା ରାଜାଙ୍କ କଥା ଶୁଣିଲେ ତ !

ବ୍ରହ୍ମଦତ୍ତ ॥ ହେଃ... । ସେଗୁଡ଼ାକ କ'ଣ ଆଜି ନୂଆ ହୋଇଚି ?

ଶୀଳଭଦ୍ର ॥ ଏ ରାଜ୍ୟରେ ବାସ କରିବା ମୋର ଘୋର ଦୁର୍ଗତି ।

ବ୍ରହ୍ମଦତ୍ତ ॥ ପ୍ରାୟ ନର୍କବାସ ସହ ସମାନ ।

ଶୀଳଭଦ୍ର ॥ ପ୍ରଥମ ଅସୁବିଧା ହେଲା ମୋର ଟିକିଏ ନଡ଼ିଆ ତେଲ ଖାଇବା ଅଭ୍ୟାସ ।

ବ୍ରହ୍ମଦତ୍ତ ॥ ଇସ୍ ! ଆପଣ ନଡ଼ିଆ ତେଲ ଖାଆନ୍ତି ନା କ'ଣ ?

ଶୀଳଭଦ୍ର ॥ ନା, ମାନେ ଏଇ ତରକାରି ଫୁଟଣଟା ନଡ଼ିଆତେଲ ନ ହୋଇ ବାଦାମ ତେଲ, ସୋରିଷ ତେଲ ହେଲେ ମତେ ବାନ୍ତି ହୋଇଯାଏ ।

ବ୍ରହ୍ମଦତ୍ତ ॥ ଭୀଷଣ ଅସୁବିଧା ତା' ହେଲେ ?

ଶୀଳଭଦ୍ର ॥ ହସ୍ତିନାପୁରରେ ନଡ଼ିଆଗଛ ନାହିଁ ।

ବ୍ରହ୍ମଦତ୍ତ ॥ ପ୍ରତିଦିନ ତା' ହେଲେ ଆପଣ ଭୋଜନ ପରେ ବାନ୍ତି କରନ୍ତି ?

ଶୀଳଭଦ୍ର ॥ ପ୍ରାୟ ଏହା ଏକ ଅଭ୍ୟାସରେ ପରିଣତ ହେଲାଣି ।

ବ୍ରହ୍ମଦତ୍ତ ॥ ତା' ହେଲେ ଏ ବାନ୍ତି ରୋଗଟା ହସ୍ତିନାପୁର ମନ୍ତ୍ରୀତ୍ୱ ପାଇଲା ପରେ ଆରମ୍ଭ ହେଲା ?

ଶୀଳଭଦ୍ର ॥ ପ୍ରାୟ ସେୟା ବୋଲି ଧରି ନିଆଯାଉ ।

ବ୍ରହ୍ମଦତ୍ତ ॥ ମୋର ଧାରଣା ଆପଣ ଅତ୍ୟଧିକ ସୋମରସ ପାନ କରନ୍ତି ।

ଶୀଳଭଦ୍ର ॥ ହାଃ–ହାଃ–ହାଃ–ଗୁଣ ଚିହ୍ନେ ଗୁଣିଆ ଏବଂ ସୁନା ଚିହ୍ନେ ବଣିଆ । ବନ୍ଧୁ ଅଭିଜ୍ଞ ବୋଲି ସିନା ଏ ଭିତର କଥା ହୃଦୟଙ୍ଗମ କରି ପାରିଲେ !

ବ୍ରହ୍ମଦତ୍ତ ॥ ହାଃ–ହାଃ–ହାଃ । କଥାଟା ନିହାତି ମିଥ୍ୟା ନୁହେଁ ବନ୍ଧୁ ! ତେବେ ମହାରାଜାଙ୍କର ଏଇ ବନ୍ୟା ନିୟନ୍ତ୍ରଣ ଯୋଜନାଟା କାହିଁକି ମନକୁ ତୋଷି ପାରିଲା ନାହିଁ !

ଶୀଳଭଦ୍ର ।। ଏଇ ଆକାଶ ଛତା ଯୋଜନା ?

ବ୍ରହ୍ମଦତ୍ତ ।। କି ଆଶ୍ଚର୍ଯ୍ୟ କଥା ଶୀଳଭଦ୍ର, ଦେଖତ ! ଶୂନ୍ୟେ ଶୂନ୍ୟେ ଆକାଶରେ ଛାତଟେ କେମିତି ତିଆରି ହେବ ?

ଶୀଳଭଦ୍ର ।। ଇତିମଧ୍ୟରେ ଚୀନ ଦେଶର ଜଣେ ପରିବ୍ରାଜକ ଆସିଥିଲେ । ସେ କଥା ପ୍ରସଙ୍ଗରେ କହିଥିଲେ ସେଠାରେ ଛ ଶହ କ୍ରୋଶ ବ୍ୟାପୀ ଏକ କାନ୍ଥ ଅଛି । ଏହା କୁଆଡ଼େ ପୃଥିବୀର ସର୍ବବୃହତ କାନ୍ଥ ।

ବ୍ରହ୍ମଦତ୍ତ ।। ରାଜା ବଜ୍ରବାହୁ ପୃଥିବୀର ସର୍ବବୃହତ ଛାତ ତିଆରି କରୁଛନ୍ତି ନା କ'ଣ ? ଏଇଥିପାଇଁ ଅର୍ଥମନ୍ତ୍ରୀ ଶୀଳଭଦ୍ରଙ୍କ ପାଖିରେ ଅର୍ଥ ଅଛନ୍ତି ?

ଶୀଳଭଦ୍ର ।। ଅର୍ଥର ବ୍ୟବସ୍ଥା କରାଯାଇପାରେ । କିନ୍ତୁ ଏକବିଂଶ ଶତ କାରିଗର ଆସିବେ କେଉଁଠୁ ? ସେ ଦାୟିତ୍ୱ ତମର ।

ବ୍ରହ୍ମଦତ୍ତ ।। ତମେ ବି ପାଗଳ ହେଲ ବନ୍ଧୁ ! ଏ ଦେଶର କାରିଗରମାନଙ୍କୁ ନେଇ କ'ଣ ଏ ଆକାଶ ଛାତ ତିଆରି ହୋଇପାରିବ ? କାହିଁ ? ସେମାନଙ୍କର ମୁଣ୍ଡ କାହିଁ ?

ଶୀଳଭଦ୍ର ।। ତା' ମାନେ ? ଆପଣ ଏକବିଂଶ ଶତ କାରିଗର ଯୋଗାଇ ଦେଇ ପାରିବେ ନାହିଁ ?

ବ୍ରହ୍ମଦତ୍ତ ।। ଅର୍ଥ ଆବଶ୍ୟକ । ଦେଶରେ ନ ମିଳିଲେ କାରିଗରମାନେ ବିଦେଶରୁ ଆସିବେ ।

ଶୀଳଭଦ୍ର ।। ଅଜସ୍ର ଅର୍ଥ ଆସିଯାଇ ପାରିବ । ତମେ କ'ଣ ଭାବୁଛ ହସ୍ତିନାପୁରରେ ଅର୍ଥ ନାହିଁ ?

ବ୍ରହ୍ମଦତ୍ତ ।। ତମେ କ'ଣ ଜାଣିନାହଁ ଶୀଳଭଦ୍ର... ? ଆକାଶରେ ସୂର୍ଯ୍ୟ ରକ୍ତ ଚକ୍ଷୁ ନେଇ ଜଳୁଛି... ଯେମିତି ହସ୍ତିନାପୁର ଜାଳି ଦେଇ ଯିବ... ଶସ୍ୟଶ୍ୟାମଳା ପୃଥିବୀ ଶୁଷ୍କ ହୋଇ ଫାଟି ଯାଇଛି... ଶୁଷ୍କ ହୋଇଛି ପୁଷ୍କରିଣୀ... ଏ ଦେଶର ରାଜପଥ ଦସ୍ୟୁ ପରିପୂର୍ଣ୍ଣ... ଏ ଦେଶର ଗ୍ରାମବାସୀ ବନ୍ୟଜନ୍ତୁ ଉପଦ୍ରୁତ । ଏଇତ ଖବର ଆସି ପହଞ୍ଚିଲା ପ୍ରଥମେ ତମ ପାଖରେ... ତା'ପରେ ରାଜା ବଜ୍ରବାହୁଙ୍କ କାନରେ...

କର୍ଣ୍ଣାଟ ଦେଶର ପ୍ରଜାମାନେ ପରସ୍ପରର ହସ୍ତପଦ ଛେଦନ କରୁଅଛନ୍ତି... ଗୌଡ଼ଦେଶ ରମଣୀମାନେ ମହ୍ୟ ହୋଇଗଲେ... କଳିଙ୍ଗର ଆକାଶରୁ ହ୍ରେଷାରବ ଶୁଭୁଛି ।

ଶୀଳଭଦ୍ର ।। ରାଜା ବଜ୍ରବାହୁ କିନ୍ତୁ ଏହି ଅବସ୍ଥାକୁ ଅସ୍ୱୀକାର କରନ୍ତି ।

ବ୍ରହ୍ମଦତ୍ତ ।। ତା' ହେଲେ ?

ଶୀଳଭଦ୍ର ।। ପ୍ରଜାମାନଙ୍କ ଉପରେ ଅଧିକ କର ବସିବ । ଫସଲ କର..

ବ୍ରହ୍ମଦତ୍ତ ।। ଏ ରାଜ୍ୟରେ ଫସଲ ନାଇଁ ।

ଶୀଳଭଦ୍ର ।। ତା' ହେଲେ ସନ୍ତାନ କର ।

ବ୍ରହ୍ମଦତ୍ତ ।। ଏ ରାଜ୍ୟର ସମସ୍ତ ସଧବା ବନ୍ଧ୍ୟା । ସମସ୍ତ ଯୁବକ ଶକ୍ତିହୀନ ।

ଶୀଳଭଦ୍ର ।। ତା'ହେଲେ ?

ବ୍ରହ୍ମଦତ୍ତ ।। ଚାଲ, ବାୟାରାଜାଙ୍କୁ ବୁଝେଇବା, ସେ ଏଇ ଉଦ୍ଭଟ ଯୋଜନାରୁ କ୍ଷାନ୍ତ ହୁଅନ୍ତୁ ।

ଶୀଳଭଦ୍ର ।। ତା' ହେଲେ ହସ୍ତିନାପୁରର ମନ୍ତ୍ରୀପଦ ତ୍ୟାଗ କରିବାକୁ ପଡ଼ିବ ।

ବ୍ରହ୍ମଦତ୍ତ ।। କିଏ ପଚାରୁଛି ହୋ ଏଇ ମନ୍ତ୍ରୀପଦକୁ ? ଏ ରାଜା ବଜ୍ରବାହୁଙ୍କ ସଭାରେ ମନ୍ତ୍ରୀ ହୋଇ କିଏ ଜାଣେ କୋଉଦିନ ଶୂଳି ପାଇବାକୁ ହେବ ।

ଶୀଳଭଦ୍ର ।। ନିଶ୍ଚୟ ନିଶ୍ଚୟ । ବୁଝିଲ ବ୍ରହ୍ମଦତ୍ତ ! ସେଦିନ ଖୁବ୍ ପାଖେଇ ଆସିଲାଣି । ହଠାତ୍ କେଉଁଦିନ ଶୂଳି ମିଳିଯାଇପାରେ ।

ବ୍ରହ୍ମଦତ୍ତ ।। ଦେଖୁନା, ରାଜା ନିଜ ପାଟରାଣୀକୁ କେମିତି ବିପନ୍ନ କରି ରଖିଛି !

ଶୀଳଭଦ୍ର ।। ଆହା ବିଚାରୀ... ହସ୍ତିନାପୁରର ରାଣୀ ହୋଇ ସନ୍ତାନର ଜନନୀ ହୋଇ ପାରିଲା ନାହିଁ ।

ବ୍ରହ୍ମଦତ୍ତ ।। ଏ ରାଜା ଯେପରି ନପୁଂସକ—ଏ ରାଜ୍ୟ ସେପରି ଉଷର ।

ଶୀଳଭଦ୍ର ।। ରାଣୀ କେତେକୀଗନ୍ଧା ରାଜପ୍ରାସାଦର ଲକ୍ଷ୍ମୀ । ତାଙ୍କରି ଯୋଗୁ ବଜ୍ରବାହୁ ରାଜତ୍ୱ ଏ ପର୍ଯ୍ୟନ୍ତ ଚଳେଇ ଆସିପାରିଲେ ।

ବ୍ରହ୍ମଦତ୍ତ ।। ଅଥଚ ଏ ରାଜାକୁ ଦେଖ ! ନିଜ ସ୍ତ୍ରୀଟାକୁ ସନ୍ତୁଷ୍ଟ ରଖି ପାରିଲା ନାହିଁ । ତା' ମନରେ ଟିକିଏ ସ୍ୱପ୍ନ ଦେଇ ପାରିଲା ନାହିଁ ।

ଶୀଳଭଦ୍ର ।। ଜାଣିଚ ? ଗୋଟିଏ ଭିତିରି ଖବର ମୁଁ ଶୁଣିଲି । (ଚାପାଗଳାରେ)

ବ୍ରହ୍ମଦତ୍ତ ।। ଏ ରାଜପ୍ରାସାଦରେ ଅନେକ ଭିତିରି ଖବର ତ ମିଳୁଛି । କୋଉଟା ଶୁଣିଲ ତମେ ?

ଶୀଳଭଦ୍ର ।। ମାଳବ ଦେଶରୁ ଜଣେ ନୂଆ ସାଧବ ପୁଅ ଆସିଛି । ଦେଖିବାକୁ ଦିବ୍ୟସୁନ୍ଦର ।

ବ୍ରହ୍ମଦତ୍ତ ।। କ'ଣ ବେପାର ବଣିଜ କରୁଛି ?

ଶୀଳଭଦ୍ର ।। ଏଇଟା ଗୋଟାଏ ନୂଆଧରଣର ବ୍ୟବସାୟ ।

ବ୍ରହ୍ମଦତ୍ତ ।। ଚୋରା କାରବାର ?

ଶୀଳଭଦ୍ର ।। ପ୍ରାୟ ସେମିତି ।

ବ୍ରହ୍ମଦତ୍ତ ।। କ'ଣ ବିକୁଛି ? (ପ୍ରାୟ ଫୁସ୍‌ଫୁସ୍ ହୋଇ)

ଶୀଳଭଦ୍ର ।। ସ୍ୱପ୍ନ ! ସ୍ୱପ୍ନ ବିକୁଛି, ସ୍ୱପ୍ନ ।

ବ୍ରହ୍ମଦତ୍ତ ।। ଏଁ–ସ୍ୱପ୍ନ !! (ଉଭୟେ ଅବାକ୍ ହୋଇ ଛଡ଼ ପାଲଟିଗଲେ । କଥାବାର୍ତ୍ତା ହୋଇ ପ୍ରବେଶ କରିଛନ୍ତି ବିଦୂଷକ ଦ୍ୱୟ)

ବି ନଂ. ୨ ।। (ପ୍ରବେଶ କରି) ସଖା ! ଏ ହସ୍ତିନାପୁରଟା ଉଜୁଡ଼ିଗଲା । ଅନେକ ଅଶୁଭ ଲକ୍ଷଣ ଭିତରୁ ଏ ବିଦେଶୀ ସ୍ୱପ୍ନ ବିକାଳି ଗୋଟିଏ । ଆମ ରାଜ୍ୟରେ ଏତେ ସ୍ୱପ୍ନ ଥାଉ ଥାଉ...

ବି. ନଂ. ୧ ।। ତା'ମାନେ ଏ ରାଜ୍ୟରେ ଆଉ କିଛି ଅଶୁଭ ଖବର ଶୁଣାଗଲାଣି ନା କ'ଣ ?

ବି. ନଂ. ୨ ।। ଅଶୁଭ ପରି ଅଶୁଭ ! ବିଶ୍ୱେଶ୍ୱର ମନ୍ଦିର ଚୂଡ଼ା ଉପରେ ପରା ଶାଗୁଣା ବସିଲା !

ବି. ନଂ ୧ ।। ନର୍କ, ନର୍କ– ହସ୍ତିନାପୁର ଗୋଟିଏ ନର୍କରେ ପରିଣତ ହେଲାଣି ।

ବି. ନଂ. ୨ ।। ତମେ ଯାହା କୁହ ଭାଇ, ଏସବୁ ଲାଗି ରାଜା ବଭ୍ରୁବାହୁ ହିଁ ଦାୟୀ । ଏସବୁ ତାଙ୍କ ଅପକର୍ମର ଫଳ । ନ ହେଲେ ମାଳବ ଦେଶରୁ ଜଣେ ସାଧବପୁଅ ଆସି ସ୍ୱପ୍ନ ବିକୁଥାଆନ୍ତା ?– ଆଉ ଏ ଦେଶର ଅଙ୍ଗନାମାନେ ତାକୁ କିଣୁଥାଆନ୍ତେ । ଛି–ଛି–ଛି–

ବି. ନଂ. ୧ ।। ଖାଲି ସେତିକି ନୁହେଁ । ରାଣୀ କେତେକୀଗନ୍ଧା ମଧ୍ୟ ଏ ସ୍ୱପ୍ନ କିଣିବା ପାଇଁ କୁଆଡ଼େ ଦୂତିକା ପଠାଇଛନ୍ତି ।

ବି. ନଂ. ୨ ।। ସଖା ! ଏ କର୍ଣ୍ଣ କ'ଣ ଶ୍ରବଣ ନ କଲା !!!

ବି. ନଂ. ୧ ।। ଘୋର ଅପମାନ !

ବି. ନଂ. ୨ ।। କିନ୍ତୁ ଏହା ସମସ୍ତ ହସ୍ତିନାପୁର ପାଇଁ ଏକ ଅଶୁଭ ଖବର ।

ବି. ନଂ. ୧ ।। ରାଜା ଯେତେବେଳେ ତାଙ୍କ ରାଜ୍ୟ ପାଇଁ ଉତ୍ତରାଧିକାରୀଟିଏ ସୃଷ୍ଟି କରି ନ ପାରିଲେ, ରାଣୀ ସ୍ୱପ୍ନ କିଣିବେନି ତ କରିବେ କ'ଣ ?

ବି. ନଂ. ୧ ।। ଅବଶ୍ୟ ! କିନ୍ତୁ ଏହା ଆମ ପକ୍ଷରେ ଲଜ୍ଜାର ବିଷୟ ।

ବି. ନଂ. ୨ ।। କିଏ ଜାଣେ ! ଏ ଅମାତ୍ୟମାନେ ମାଳବ ସାଧବ ପୁଅ ଓ ରାଣୀଙ୍କ ଭିତରେ ହୁଏତ ଯୋଗସୂତ୍ର ସ୍ଥାପନ କରିଥିବେ !! (ଉଭୟେ ନିଜ କଥାରେ ନିଜେ ଆଶ୍ଚର୍ଯ୍ୟ ହୋଇ ଢଡ଼ ପାଲଟି ଗଲେ । ତାଙ୍କ ଉପରୁ ଆଲୋକ ସ୍ତିମିତ ହୋଇ ଆସିଲା ଏବଂ ମନ୍ତ୍ରୀଦ୍ୱୟଙ୍କ ଉପରେ ପୁଣି ଆଲୁଅ ଜଳିଲା । ପ୍ରବେଶ କରିଛି ଦୂତ ।)

ଦୂତ ।। (ପ୍ରବେଶ କରି) ଜଣେ ବିଦେଶୀ ସୌଦାଗର ଛାମୁଙ୍କ ଦର୍ଶନ ପ୍ରାର୍ଥୀ ।

ଶୀଳଭଦ୍ର ।। ତାଙ୍କୁ ପ୍ରବେଶ କରାଅ । (ଦୂତର ପ୍ରସ୍ଥାନ ଓ ଜଣେ ବିଦେଶୀ ଶ୍ୱେତାଙ୍ଗ ସୌଦାଗରଙ୍କ ଆଗମନ ।)

ଶ୍ୱେତାଙ୍ଗ ସୌଦାଗର ।। ଚ୍ୱେତାଙ୍ଗ ଚୌଦାଗର ଆପଣଙ୍କୁ ଚମ୍ମାନ ଜଣାଉଛି ।

ଶୀଳଭଦ୍ର ।। ଏ ହେଲେ ଶିଳ୍ପ ଅମାତ୍ୟ ବ୍ରହ୍ମଦତ୍ତ ।

ବ୍ରହ୍ମଦତ୍ତ ।। ଏ ହେଲେ ଅର୍ଥ ଅମାତ୍ୟ ଶୀଳଭଦ୍ର ।

ଶ୍ୱେତାଙ୍ଗ ସୌଦାଗର ।। ଚା'... ଚା'.... ଚୂ....ଚୂ... (ହାତ ମିଳାଇଲେ)

ବ୍ରହ୍ମଦତ୍ତ ।। ଆପଣଙ୍କର ଆସିବା ଅଭିପ୍ରାୟ ?

ଶ୍ୱେତାଙ୍ଗ ସୌଦାଗର ।। ଚୀନ, ଚାପାନ, ଚିଂହଳ, ଚିଙ୍ଗାପୁର, ପାକିଥାନ ଭ୍ରମଣ କରି ଆମେ ଚେଚରେ ହଚ୍‌ଚିନା ନଗରକୁ ଆଚି ଅଛୁ ।

ଶୀଳଭଦ୍ର ।। କିନ୍ତୁ ଆପଣଙ୍କ ପାଇଁ ହସ୍ତିନା ନଗ୍ରରେ କ'ଣ ଅଛି ?

ଶ୍ୱେତାଙ୍ଗ ସୌଦାଗର ।। ହଚ୍‌ଚିନାରେ ଚବୁ ଅଛି । ବୁଦ୍ଧି, ଚଂସ୍କୃତି, ଚାହିତ୍ୟ, କଳା ଚବୁ ଅଛି । ଆମେ ଆମ ଦେଚରେ ଥାଇ ଚେ ଚବୁ ଚୁଣି ଅଛୁ ।

ବ୍ରହ୍ମଦତ୍ତ ।। ଆମ ଦେଶର ଲୋକେ କ'ଣ ଆପଣଙ୍କ ଦେଶଠାରୁ ଅଧିକ ବୁଦ୍ଧିମାନ୍ ? ଅଧିକ ଶକ୍ତିଶାଳୀ ।

ଶ୍ୱେତାଙ୍ଗ ସୌଦାଗର ।। ଆମ ଦେଟରେ ବୁଦ୍ଧିମାନ ଲୋକଙ୍କୁ ଟମସ୍ତେ ଜାଣନ୍ତି । ଟମ୍ମାନ ଦିଅନ୍ତି । କିନ୍ତୁ ଆମ୍ଭେ ଟୁଣିଲୁ ଆପଣଙ୍କ ଦେଟରେ ବୁଦ୍ଧିଟବୁ ଖାଦ୍ୟବିନା ମରିଯାଉଛନ୍ତି ।

ବୃହନ୍ନଦତ୍ତ ।। ସେଥିପାଇଁ ସମ୍ରାଟ ବଜ୍ରବାହୁ ହସ୍ତିନା ନଗରରେ ସନ୍ତାନ ବନ୍ଦ ପାଇଁ କଠୋର ଆଦେଶ ଦେଇଛନ୍ତି ।

ଶ୍ୱେତାଙ୍ଗ ସୌଦାଗର ।। ଟାଧୁ–ଟାଧୁ ! ହଁ, ଆମ୍ଭେ ଟୁଣିଲୁ । ହଟ୍ତିନା ନଗରରେ ଟେହ୍ନ ଓ ପ୍ରେମର ବନ୍ଧନ କୁଆଡ଼େ ଅତି ନିବିଡ଼ । ଅତି ଅନ୍ତରଙ୍ଗ ।

ଶୀଳଭଦ୍ର ।। ଠିକ୍ ଶୁଣିଛନ୍ତି ।

ଶ୍ୱେତାଙ୍ଗ ସୌଦାଗର ।। କିନ୍ତୁ ଆମ ଦେଟରେ ଠିକ୍ ଓଲଟା । ଟେଠି ବିବାହ ଏକ ପ୍ରହଟନ । ବାରମ୍ବାର ବିବାହ କରିବା ଆମର ଅଭ୍ୟାଟ୍ ।

ବୃହନ୍ନଦତ୍ତ ।। ଆପଣ ବିବାହିତ ?

ଶ୍ୱେ.ସୌ. ।। ନା ।

ଶୀଳଭଦ୍ର ।। ଆପଣ ଆମ ଦେଶର ଏକ ରମଣୀ ବିବାହ କରିବେ ?

ଶ୍ୱେ. ସୌ. ।। ହେଃ–ହେଃ–ହେଃ । କ'ଣ କହିଲେ ? ·ବିବାହ ?? ନା, ନା, ଆମେ ଭ୍ରମଣ କରିବାକୁ ଆଟିଛୁ । ବିବାହ ନୁହେଁ ।

ବୃହନ୍ନଦତ୍ତ ।। ଆପଣ ଆମ ଦେଶରେ ବିବାହ କଲେ ନିବିଡ଼ ସ୍ନେହ ଓ ପ୍ରେମ ଜାଲରେ ପଡ଼ି ଆତ୍ମବିଭୋର ହେବେ ।

ଶୀଳଭଦ୍ର ।। ଏଥିରେ ଲଜ୍ଜା କରିବାର କ'ଣ ଅଛି ?

ଶ୍ୱେ.ସୌ. ।। ଆଛା, ଆଛା–ଆପଣମାନଙ୍କ ବ୍ୟବହାରରେ ପ୍ରୀତ ହୋଇ ଆମେ ଆପଣଙ୍କୁ ଏକ ଉପହାର ଦେବୁ । (କାନ୍ଧରେ ଝୁଲୁଥିବା ମୁଣିରୁ, ଶିଶିଟିଏ ବାହାର କରି) ଟାଖନ୍ତୁ !

ଶୀଳଭଦ୍ର ।। ଧନ୍ୟବାଦ, ଆପଣ ଆମର ନମସ୍ୟ ।

ଶ୍ୱେ.ସୌ. ।। ଆମ୍ଭେ, ଟମ୍ରାଟଙ୍କୁ ଟିକିଏ ଦେଖା କରିବା ପାଇଁ ଟାହୁଁ ।

ବୃହନ୍ନଦତ୍ତ ।। କିନ୍ତୁ ସମ୍ରାଟ ବର୍ତ୍ତମାନ ମଣୋହି ସଭାରେ ବିଦ୍ୟମାନ ।

ଶୀଳଭଦ୍ର ।। ଭୋଜନ କରୁଅଛନ୍ତି ।

ଶ୍ୱେ.ସୌ. ।। ତେବେ କ'ଣ ନିରାଟ ହେବାକୁ ପଡ଼ିବ ? ଆମର ଟିକିଏ ଜରୁରି ଦରକାର ଥିଲା ! ଆମ୍ଭେ ହଟ୍ତିନାରେ କିଛି ବ୍ୟବଟାୟ କରିବୁ । ଆପଣମାନଙ୍କ ଅନୁମତି ମିଳିଲେ..

ଶୀଳଭଦ୍ର ॥ ଆଛା ! ଆପଣ ଆଜି ମଧରାତ୍ରିରେ ସମ୍ରାଟଙ୍କୁ ଦେଖା କରନ୍ତୁ ।

ଶ୍ୱେ.ସୌ. ॥ ରାତିରେ !!!

ଶୀଳଭଦ୍ର ॥ ହଁ, ଏ ହସ୍ତିନା ସାମ୍ରାଜ୍ୟରେ କେବଳ ରାତିରେ ହିଁ ଏଥର ନ୍ୟାୟାଳୟ ବସିବ । ସମାଜବାଦ ଉପରେ ଏକ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠିତ ହେବ ।

ବ୍ରହ୍ମଦତ୍ତ ॥ କାରଣ ଅନ୍ଧାର ଭିତରେ ସର୍ବେ ହୋଇବେ ଏକାକାର ।

ଶ୍ୱେ.ସୌ. ॥ ଚାଧୁ–ଚାଧୁ–ଆମ୍ଭେ ଚୁବେଛ୍ଛା ଜଣାଇଲୁ । ଚୁନ୍ଦର ବ୍ୟବସ୍ଥା ।

ଶୀଳଭଦ୍ର ॥ ଆଛା, ସୌଦାଗର । ଆପଣଙ୍କର ସାମାଜିକ ପ୍ରଣାଳୀ ନିଶ୍ଚୟ ଆମ ଦେଶଠାରୁ ଉନ୍ନତ ହୋଇଥିବ ?

ଶ୍ୱେ.ସୌ. ॥ ଆମ ଦେଶରେ ଅର୍ଥ ଅଛି । କିନ୍ତୁ ଚାନ୍ତି ନାହିଁ । ଆପଣଙ୍କ ଦେଚରେ ଚାନ୍ତି ଅଛି, ଅର୍ଥ ବି ଅଛି । କିନ୍ତୁ ଚେ ଅର୍ଥର ବିନିଯୋଗ ହୋଇପାରୁ ନାହିଁ ।

ବ୍ରହ୍ମଦତ୍ତ ॥ ଏ ଅର୍ଥ ଏ ଦେଶର ଅଗଣିତ ଜନତାଙ୍କ ପାଇଁ ସ୍ୱର୍ଗ ।

ଶ୍ୱେ.ସୌ. ॥ ଆପଣ କହିଲେ– ଚମ୍ରାଟ ଚନ୍ତାନ ବନ୍ଦ କରିବା ପାଇଁ ଆଦେଚ ଦେଇଛନ୍ତି ଏବଂ ଆମ୍ଭେ ଚୁଣିଲୁ ନିଜେ ବି ରାଣୀଙ୍କୁ ଦେଖାକରୁ ନାହାନ୍ତି ।

ଶୀଳଭଦ୍ର ॥ ଆପଣ ଠିକ୍ ଶୁଣିଛନ୍ତି ।

ଶ୍ୱେ.ସୌ. ॥ ଚି ଚି–ଚା ଚା–ଚୁ–ଚୁ – ବିଚାରୀ ରାଣୀ । ଆମ୍ଭେ ଟିକିଏ ଚେ ରାଣୀଙ୍କୁ ଦେଖା କରିବା ପାଇଁ ଚାହୁଁ ।

ବ୍ରହ୍ମଦତ୍ତ ॥ ଅସମ୍ଭବ ! ରାଣୀ କାହାକୁ ଦେଖା କରନ୍ତିନି । ଆପଣ ବରଂ ରାତିରେ ଆସନ୍ତୁ । ଆମ୍ଭେ ସମ୍ରାଟଙ୍କ ସହ ଦେଖା କରାଇ ଦେବୁ ।

ଶ୍ୱେ.ସୌ. ॥ ଆମ୍ଭ କଥା ତେବେ ରାଣୀଙ୍କୁ ଟିକିଏ କହିବେ । ଆଛା ଆମେ ତେବେ ପରେ ଆଚିବୁ । ଚା–ଚା ଚୁ–ଚୁ (ପ୍ରସ୍ଥାନ)

ଶୀଳଭଦ୍ର ॥ (ନମସ୍କାର କରି) ଅଦ୍ଭୁତ ଏ ସୌଦାଗର ।

ବ୍ରହ୍ମଦତ୍ତ ॥ ଅଦ୍ଭୁତ !

(ଉଭୟେ ନିଜ ଆବିଷ୍କାରରେ ନିଜେ ମୁଗ୍ଧ ହୋଇ ଉଡ଼୍ ପାଲଟି ଗଲେ । ବର୍ତ୍ତମାନ ଆଲୋକ ବିଦୂଷକମାନଙ୍କ ଉପରେ ପଡ଼ିଲା ।)

ବିଦୂଷକ ନଂ. ଏକ ।। (ଆତ୍ମ–ବୈରାଗ୍ୟର ସ୍ୱର) ନାଃ, ମୁଁ ସନ୍ନ୍ୟାସୀ ହୋଇ ଏଥର ବାନପ୍ରସ୍ଥ କରିବି ।

ବିଦୂଷକ ନଂ ଦୁଇ ।। କିହୋ ହଠାତ୍ ତମର କ'ଣ ହେଲା ?

ବିଦୂଷକ ନଂ ଏକ ।। ଏ ରାଜପ୍ରାସାଦର ଶୁଷ୍କ ଆବେଷ୍ଟନୀ ଆଉ ଭଲ ଲାଗୁନି । ଟିକିଏ ବି ସ୍ୱପ୍ନର ତରଙ୍ଗ ନାଇଁ ।

ବିଦୂଷକ ନଂ ଦୁଇ ।। ନାଇଁ ମ' ସଖୀ ଦ'ଣ କହିଥିବେ.... (ଆଖି ମାରିଲେ)

ବିଦୂଷକ ନଂ ଏକ ।। ହେଃ ! ସଖା, ତମର ଯୋଉ କଥା....

ବିଦୂଷକ ନଂ ଦୁଇ ।। ନାଇଁ ମ'.... କ'ଣ ଗୋଟେ ଅସୁବିଧା ହେଇଥିବ ନା...

ବିଦୂଷକ ନଂ ଏକ ।। ନାଃ ! ଏ ରାଜପ୍ରାସାଦରେ ଏତେଦିନ ପଦ ସେବା କରି ରହିଲେ । ଅଥଚ ଲାଭ ବୋଲି କିଛି ନାହିଁ ?

ବିଦୂଷକ ନଂ ଦୁଇ ।। ବଜ୍ରବାହୁଙ୍କୁ ତୈଳ ମର୍ଦ୍ଦନ କରି କରି ମୋ' ହାତର ପାପୁଲି ପତଳା ହୋଇଗଲା ।

ବିଦୂଷକ ନଂ ଏକ ।। ମୋର ତ ହସ୍ତରେଖା ଗୁଡ଼ିକ ଲିଭିଗଲାଣି ସଖା, ଅଥଚ...

ବିଦୂଷକ ନଂ ଦୁଇ ।। ସବୁ ସୁବିଧା ଅମାତ୍ୟ ମାନେ ମାରିନେଲେ ।

ବିଦୂଷକ ନଂ ଏକ ।। ଅନ୍ତଃପୁରରେ ରାଣୀଙ୍କର ଯୋଉ ସଖୀ ଅଛନ୍ତି– ସେଇଥିରୁ ଗୋଟାକ ପ୍ରତି ମୋର ମନ ବଳିଛି ସଖା । ସେ ଯଦି ମନା କରିଦିଏ... ମୁଁ ସତରେ ବାନପ୍ରସ୍ଥରେ ଚାଲିଯିବି ।

ବିଦୂଷକ ନଂ ଦୁଇ ।। ଓ ! ତା'ହେଲେ କଥାଟା ଏଇଠି...

ବିଦୂଷକ ନଂ ଏକ ।। ସଖା ! ମୋ ରୂପଲାବଣ୍ୟ କ'ଣ ଦୁର୍ଭିକ୍ଷଗ୍ରସ୍ତ ?

ବିଦୂଷକ ନଂ ଦୁଇ ।। ହେଃ ! କିଏ କହିଲା ?

ବିଦୂଷକ ନଂ ଏକ ।। ସମ୍ରାଟ ବଜ୍ରବାହୁଙ୍କ ଶ୍ରୀକଳସରୁ ଲୁଚେଇ ଟିକିଏ ସୋମରସ ପାନ କରି ଦେଇଥିଲି । ଆହା, କି ସୁମିଷ୍ଟ ପାନୀୟ ତାହା !! ତା'ପରେ ସଖା, ତମକୁ ଆଉ କ'ଣ ଲୁଚେଇବି... ରାଣୀଙ୍କର ଦ୍ୱିତୀୟ ସଖୀଟି ପ୍ରତି ମୋର ସାମାନ୍ୟ କାମଭାବ ଜାଗ୍ରତ ହେଲା... ଯାଇ ପ୍ରିୟ ସଂଗିନୀକୁ ରତି ଭିକ୍ଷା କରନ୍ତେ .... (ଭୋ ଭୋ ହୋଇ କାନ୍ଦିଲେ)

ବିଦୂଷକ ନଂ ଦୁଇ ।। କ'ଣ ମନା କରିଦେଲା.. ? ଓ ହୋ... ସଖା, ତମେ ଏତେ ବିକଳ ହୁଅନା । ତୁମେ କ୍ରନ୍ଦନ କଲେ ମୋ' ଚକ୍ଷୁରୁ ମଧ୍ୟ ଅଶ୍ରୁ ନିର୍ଗତ ହୋଇପାରେ ।

ବିଦୂଷକ ନଂ ଏକ ।। ସଖା ମତେ ସେ ପ୍ରହାର କଲା... ଅର୍ଥମନ୍ତ୍ରୀ ଶୀଳଭଦ୍ର କ'ଣ ମୋ'ଠାରୁ ସୁନ୍ଦର ?

ବିଦୂଷକ ନଂ ଦୁଇ ।। ତାଙ୍କର ଅର୍ଥ ଅଛି । କ୍ଷମତା ଅଛି । ବୁଦ୍ଧି ଅଛି ।

ବିଦୂଷକ ନଂ ଏକ ।। ଆମ୍ଭ ନିକଟରେ ତୈଳ ଅଛି ।

ବିଦୂଷକ ନଂ ଦୁଇ ।। ତୈଳ ଅଛି ମାନେ ସବୁ ସମ୍ଭବ । ତେଣୁ ସଖା, ବାନପ୍ରସ୍ଥରେ ନ ଯାଇ ଚାଲ ତୈଳ ପରୀକ୍ଷା କରିବା । ଦେଖିବା ତୈଳ ମର୍ଦ୍ଦନ କରି ଅର୍ଥ ଓ କ୍ଷମତା ଆସି ପାରିବ କି ନାହିଁ.... ମୋ'ର ବିଶ୍ୱାସ ନିଶ୍ଚୟ ଆସିବ ।

ବିଦୂଷକ ନଂ ଏକ ।। କିନ୍ତୁ ରାଣୀଙ୍କର ଦ୍ୱିତୀୟ ସଖୀ ?

ବିଦୂଷକ ନଂ ଦୁଇ ।। ଅର୍ଥ ଓ କ୍ଷମତା ଆସିଗଲେ ଶୀଳଭଦ୍ରଙ୍କୁ ଛାଡ଼ି ସେ ତୁମ୍ଭ ପାଖକୁ ଆସିବେ ।

ବିଦୂଷକ ନଂ ଏକ ।। ନିଶ୍ଚୟ ଆସିବେ ?

ବିଦୂଷକ ନଂ ଦୁଇ ।। ନିଶ୍ଚୟ । ଚାଲ ସମ୍ରାଟଙ୍କ ପାଖରେ ପୁଣି ଅଧିଆ ପଡ଼ିବା । [ବିଦୂଷକ ଦ୍ୱୟ ଚାଲିଗଲା ପରେ କ୍ରମଶଃ ଆଲୋକ ପଡ଼ିଲା ମନ୍ତ୍ରୀଦ୍ୱୟଙ୍କ ଉପରେ । ଶୀଳଭଦ୍ର ସୋମରସ ପାନ କରୁଥିଲେ । ବ୍ରହ୍ମଦତ୍ତ ଉଦ୍‌ବ୍ୟସ୍ତ ଅବସ୍ଥାରେ ଥିଲେ ।]

ବ୍ରହ୍ମଦତ୍ତ ।। ଅବନ୍ତୀର ସାଧବ ପୁଅ ଏଇଠି ମହାରାଣୀଙ୍କୁ ସ୍ୱପ୍ନ ବିକ୍ରୀ କରିବ ବୋଲି ସମ୍ରାଟ ବଜ୍ରବାହୁ ଜାଣି ନାହାନ୍ତି । ତା' ହେଲେ ଏସବୁ ହେଲା କେମିତି ? ମୁଁ କିଛି ବୁଝିପାରୁ ନାହିଁ ଶୀଳଭଦ୍ର !!

ଶୀଳଭଦ୍ର ।। କିଏ ଜାଣେ ! ଏହି ବିଦୂଷକମାନେ ମାଳବ ସାଧବ ପୁଅ ଓ ରାଣୀଙ୍କ ଭିତରେ ଯୋଗସୂତ୍ର ସ୍ଥାପନ କରି ଦେଇଥିବେ !

ବ୍ରହ୍ମଦତ୍ତ ।। ଆଜି ଦେଖିଲ, ମହାରାଜ ସେମାନଙ୍କୁ ମଣୋହି ପାଇଁ ନିମନ୍ତ୍ରଣ କଲେ !

ଶୀଳଭଦ୍ର ।। ଆମ ଭଳି ମନ୍ତ୍ରୀ ଦ୍ୱୟ ଥାଉ ଥାଉ !....

ବ୍ରହ୍ମଦତ୍ତ ।। କାରଣ ବଜ୍ରବାହୁ ଆମ୍ଭମାନଙ୍କୁ ଭୟ କରନ୍ତି ।

ଶୀଳଭଦ୍ର ।। ହୋଇ ନ ପାରେ ।

ବ୍ରହ୍ମଦତ୍ତ ।। ବୁଦ୍ଧିମାନ ଲୋକଙ୍କୁ ସେ ଭୟ କରନ୍ତି । ପୁନଶ୍ଚ ତାଙ୍କର ସଂସ୍କୃତି ଜ୍ଞାନ କମ୍ ଥିଲା । ପ୍ରତି କଥାରେ ସେ ଆମର ପରାମର୍ଶ ନେବା ପାଇଁ ବାଧ ।

ଶୀଳଭଦ୍ର ॥ ତା' ହେଲେ ଏଇ ରଜତଜୟନ୍ତୀ ଉତ୍ସବର ଭୋଜିସଭାରେ ଆମେ ଅନିମନ୍ତ୍ରିତ ରହିଲେ କିପରି ?

ବ୍ରହ୍ମଦତ୍ତ ॥ ବିଦୂଷକମାନେ ତୈଳାକ୍ତ କରି ଜାଣନ୍ତି ।

ଶୀଳଭଦ୍ର ॥ ହାଃ–ହାଃ–ହାଃ । ଆରେ ଭାଇ, ସେଥିପାଇଁ ତ ସେମାନେ ବିଦୂଷକ ।

ବ୍ରହ୍ମଦତ୍ତ ॥ ବଜ୍ରବାହୁଙ୍କ ପ୍ରତି କଥାରେ ସେମାନେ ମୁଣ୍ଡ ହଲାଇ ଆସୁଛନ୍ତି ।

ଶୀଳଭଦ୍ର ॥ ଏଇ ବିଦୂଷକମାନେ ହିଁ ହସ୍ତିନାପୁର ରାଜ୍ୟକୁ ଖାଇଲେ ।

ବ୍ରହ୍ମଦତ୍ତ ॥ ପ୍ରତି ଯୁଗରେ ଏମାନେ ରାଜାମାନଙ୍କର ପାଦ ଚାଟି ଚାଟି ଆସିଛନ୍ତି ଏବଂ ଏଇଥିପାଇଁ ରାଜା ସେମାନଙ୍କୁ ଭଲ ପାଆନ୍ତି ।

ଶୀଳଭଦ୍ର ॥ ତମେ ସେମାନଙ୍କୁ ପ୍ରକାଶ୍ୟରେ କେବେ ଗାଳି ଦେବ ନାହିଁ ବ୍ରହ୍ମଦତ୍ତ । ଅନ୍ୟଥା ନିଜର ଅବସ୍ଥା ଖରାପ ହୋଇପାରେ ।

ବ୍ରହ୍ମଦତ୍ତ ॥ ହସ୍ତିନା ନଗ୍ର ସଂପୂର୍ଣ୍ଣ ଧୂଳିସାତ୍ ହେବାକୁ ଯାଉଛି । ତଥାପି ମଧ୍ୟ ଆମ୍ଭେ ବଜ୍ରବାହୁଙ୍କ ସହିତ ଏହି ବିଦୂଷକମାନଙ୍କୁ ଜନତା ଆଗରେ ଅପମାନିତ କରିବା ନାହିଁ ? କ'ଣ ତମେ କହୁଛ ଶୀଳଭଦ୍ର ?

ଶୀଳଭଦ୍ର ॥ ଆସ୍ତେ ଆସ୍ତେ । ଏ ରୀତିମତ ଷଡ଼ଯନ୍ତ୍ର ଭଳି ଲାଗୁଛି ।

ବ୍ରହ୍ମଦତ୍ତ ॥ ସତ କହିବା କ'ଣ ଷଡ଼ଯନ୍ତ୍ର ?

ଶୀଳଭଦ୍ର ॥ ରାଜଭକ୍ତି ଅଟଳ ରହିବା ଉଚିତ—ଦେଶିକି ସମ୍ରାଟ ଯାହା ହୁଅନ୍ତୁ ପଛେ...

ବ୍ରହ୍ମଦତ୍ତ ॥ କିନ୍ତୁ ମୁଁ ବଜ୍ରବାହୁଙ୍କ ଶାସନକାଳରେ ଉଦ୍‌ଭ୍ରାନ୍ତ ହୋଇ ପଡ଼ିଛି । ଶୀଳଭଦ୍ର ! ରାଜା ଯଦି ଧର୍ମାତ୍ମା, ତା' ହେଲେ ପ୍ରଜାମାନଙ୍କର ଏତେ ଦୁଃଖ କାହିଁକି ? କାହିଁକି ଏତେ ଅନାହାର ମୃତ୍ୟୁ ? କାହିଁକି ଏହି ବନ୍ଧ୍ୟାତ୍ୱ । ଫଳେ, ପୁଷ୍ପେ, ଶସ୍ୟକ୍ଷେତ୍ରେ...ଜନନୀ ଗର୍ଭେ । ପଟ୍ଟମହିଷୀ କେତକୀଗନ୍ଧା କାହିଁକି ଆଜି ସାଧବ ପୁଅଠୁ ସ୍ୱପ୍ନ କିଣିବା ପାଇଁ ବ୍ୟାକୁଳ ?

ଶୀଳଭଦ୍ର ॥ ଜାଣେନା । ହୁଏତ ରାଣୀ କୁଳରକ୍ଷା କରିବା ପାଇଁ ବ୍ୟାକୁଳ ! ସେ ଶାନ୍ତ୍ୱନା ଚାହାନ୍ତି ।

ବ୍ରହ୍ମଦତ୍ତ ।। କିନ୍ତୁ ଅନ୍ତଃପୁର ଶୂନ୍ୟ, ହସ୍ତିନାପତି ବଜ୍ରବାହୁ ଆଜି ଅକ୍ଷମ, ନିଃଶେଷ ତାଙ୍କର ବୀର୍ଯ୍ୟ । ତେଣୁ ଏ ମୃତ୍ତିକା ଶୁଷ୍କ । ଶୁଷ୍କ ନଭୋତଳ.... ରୁଦ୍ଧ ତେଣୁ ବାତାୟନ । ତେଣୁ ରୁଦ୍ଧ ଋତୁରାଜ ବସନ୍ତ ମଳୟ—ଏ ନଗ୍ରରେ ନାହିଁ ଶସ୍ୟ, ଗୋବତ୍ସା ସନ୍ତାନ ।

ଶୀଳଭଦ୍ର ।। ସେଥି ସକାଶେ ହୁଏତ ବଜ୍ରବାହୁ ଆଦେଶ କରିଅଛନ୍ତି ହସ୍ତିନାପୁରରେ ଯାହାର ସନ୍ତାନ ହେବ, ସେ ପାଇବ ଶୂଳୀଦଣ୍ଡ । ସେଇ ଦିନରୁ ଏ ରାଜ୍ୟ ବନ୍ଧ୍ୟା—ଖାଲି ଜନନୀ ଜଠରେ ନୁହେଁ... ଏ ରାଜ୍ୟର ବସୁମତୀ ମଧ୍ୟ ଶସ୍ୟ ଉତ୍ପାଦନ କରିବା ପାଇଁ ବିମୁଖ ।

ବ୍ରହ୍ମଦତ୍ତ ।। ପୃଥିବୀର ଅନ୍ୟ କେଉଁ ଦେଶରେ ଏହିଭଳି ଉଦ୍‌ଭଟ ଦୃଷ୍ଟାନ୍ତ ନାହିଁ ଶୀଳଭଦ୍ର । କେଉଁ ଦେଶରେ ସନ୍ତାନର ଜନ୍ମ ଅପରାଧ ?

ଶୀଳଭଦ୍ର ।। ହସ୍ତିନାନଗର ଅର୍ଥ ଭଣ୍ଡାର ମୋ ହସ୍ତରେ । ବନ୍ୟା ଆଉ ବାତ୍ୟା ସହ ବର୍ତ୍ତମାନ ଘୋର ଅକାଳ ଉପସ୍ଥିତ । ଏ ଅକାଳରେ ହସ୍ତିନାରାଜ୍ୟ ସନ୍ତାନ ଚାହେଁନା ...

ବ୍ରହ୍ମଦତ୍ତ ।। ଶୀଳଭଦ୍ର !

ଶୀଳଭଦ୍ର ।। (ହସି) ବ୍ରହ୍ମଦତ୍ତ ! ଉତ୍ତ୍ୟକ୍ତ ହୁଅନା । ଯେଉଁ ରାଜ୍ୟରେ ବଜ୍ରବାହୁ ରାଜା ସେଠାରେ ଅମାତ୍ୟମାନଙ୍କର ଚିନ୍ତା କରିବା ଅନାବଶ୍ୟକ ।

ବ୍ରହ୍ମଦତ୍ତ ।। କିନ୍ତୁ ଆମେ ଶିକ୍ଷିତ, ରାଜା ବଜ୍ରବାହୁଠାରୁ ଆହୁରି ଶିକ୍ଷିତ ।

ଶୀଳଭଦ୍ର ।। ସତ କଥାଟିଏ କହିବି ବ୍ରହ୍ମଦତ୍ତ । ମନ୍ତ୍ରୀତ୍ୱ ପାଇଛେ ବୋଲି ହସ୍ତିନାପୁରରେ ଆମେ କ'ଣ ସର୍ବଶ୍ରେଷ୍ଠ ନାଗରିକ ?

ବ୍ରହ୍ମଦତ୍ତ ।। ଆମ୍ଭେ କୁଳଶ୍ରେଷ୍ଠ । ଆମ୍ଭେ ଜନତାର ନ୍ୟାୟାଳୟ । ଆମ୍ଭେ ଜନତାର ବିବେକ ।

ଶୀଳଭଦ୍ର ।। ତା' ବୋଲି ତମେ ରାଜା ବଜ୍ରବାହୁଙ୍କର ଜ୍ଞାନକୁ ଅସ୍ୱୀକାର କରିବ— ଏ କଥା ମୁଁ ସହ୍ୟ କରିପାରିବି ନାହିଁ ।

ବ୍ରହ୍ମଦତ୍ତ ॥ ଓ ! ରାଜ ଭକ୍ତି ? ସତ୍ୟ ଆଗରେ କୋଟି କୋଟି ରାଜ ସିଂହାସନ ଟଳି ଯାଇଛି ଶୀଳଭଦ୍ର । ଇତିହାସ ତା'ର ସାକ୍ଷୀ ଦେବ । ପ୍ରଜାମାନଙ୍କର କଲ୍ୟାଣ ପାଇଁ ରାଜାର ସୃଷ୍ଟି । ସେ ରାଜା ଯଦି ସ୍ୱେଚ୍ଛାଚାରୀ ହୁଏ ତେବେ ରାଜ୍ୟରେ ପ୍ରତିବାଦର ନିଆଁ ଜଳିବ ସତ୍ୟ ପ୍ରତିଷ୍ଠା ହେଲା ପର୍ଯ୍ୟନ୍ତ । ତୁମେ ଏ ଦେଶର ଗୁରୁକୁଳ ଆଶ୍ରମ କେବେ ପରିଦର୍ଶନ କରିବା ପାଇଁ ଯାଇଛ ? ଦେଖିଛ କେବେ ସେମାନଙ୍କର ତେଜୋଦୀପ୍ତ ମୁଖମଣ୍ଡଳ ? ଦେଖିଛ ସେଇ ଶ୍ମଶ୍ରୁ ମୁଖ ଆଚାର୍ଯ୍ୟମାନଙ୍କର ଚକ୍ଷୁ, ଯେଉଁଠି ଶତାଧିକ ସୂର୍ଯ୍ୟର କାନ୍ତି ଉଦ୍‌ଭାସିତ ହୁଏ ? ଦେଖିଛ ସେଇ ଚିନ୍ମୟ ଦିବ୍ୟଗୁରୁମାନଙ୍କୁ ?

ଶୀଳଭଦ୍ର ॥ ସେମାନେ ନିରୀହ ମେଷ ଶାବକ, ଅର୍ଥ ନାହିଁ, ସାମ୍ରାଜ୍ୟ ନାହିଁ, ପ୍ରତିପତ୍ତି ନାହିଁ, ଯାନ ନାହିଁ, ବାହାନ ନାହିଁ, ପ୍ରତିଷ୍ଠା ନାହିଁ ।

ବ୍ରହ୍ମଦତ୍ତ ॥ ସେମାନଙ୍କ ଜ୍ଞାନରେ ତମେ ଆଜି ହସ୍ତିନାପୁରର ସର୍ବଶ୍ରେଷ୍ଠ ଜ୍ଞାନୀ ଶୀଳଭଦ୍ର—ଏକଥା ଭୁଲିଯାଅନା ।

ଶୀଳଭଦ୍ର ॥ ସେମାନଙ୍କ ଜ୍ଞାନ ପରୀକ୍ଷା କରାଯିବ ।

ବ୍ରହ୍ମଦତ୍ତ ॥ ତମେ ସେମାନଙ୍କ ଜ୍ଞାନ ପରୀକ୍ଷା କରିବ ?

ଶୀଳଭଦ୍ର ॥ ହସ୍ତିନାପତି ବଜ୍ରବାହୁ ଆଦେଶ ଦେଇଛନ୍ତି । ପଞ୍ଚଶତ ସହସ୍ର ଯୋଜନ ଦୀର୍ଘ ଏକ ଆକାଶ ଛାତ !

ବ୍ରହ୍ମଦତ୍ତ ॥ ତାହା ତ କାରିଗରମାନଙ୍କ କର୍ମ !

ଶୀଳଭଦ୍ର ॥ ହାଃ–ହାଃ–ହାଃ–କାରିଗର ! ଏ ଦେଶରେ କାରିଗର କାହାନ୍ତି ? ମହେଞ୍ଜୋଦାର ଶିଳ୍ପୀ ଆଜି ମୃତ ! ଆର୍ଯ୍ୟାବର୍ତ୍ତର କାରିଗର ଆଜି ଭ୍ରଷ୍ଟ । ସେମାନେ କେବଳ ବଜ୍ରବାହୁଙ୍କ ଶାସନରେ ଗୋଟିଏ କଥା ଶିଖିଛନ୍ତି, ତାହା ଦୁର୍ନୀତି ଓ ଅର୍ଥ ଆତ୍ମସାତ୍ କରିବା । ଗୋଟିଏ କଥା ଭୁଲିଛନ୍ତି, ତାହା ତାଙ୍କର ଶିଳ୍ପୀ କୌଶଳ ।

ବ୍ରହ୍ମଦତ୍ତ ॥ ତା' ହେଲେ ? ତମେ କ'ଣ କହିବା ପାଇଁ ଯାଉଛ ?

ଶୀଳଭଦ୍ର ॥ ମୁଁ ହସ୍ତିନା ରାଜ୍ୟରେ ଆଚାର୍ଯ୍ୟମାନଙ୍କୁ ଆକାଶ ଛାତ ନିର୍ମାଣ କାର୍ଯ୍ୟରେ ବିନିଯୋଗ କରିବି ।

ବ୍ରହ୍ମଦତ୍ତ ।। ହାଃ–ହାଃ... ଅତ୍ୟଧିକ ସୋମରସ ପାନ କରି ତୁମ୍ଭର ମସ୍ତିଷ୍କ ଭାରସାମ୍ୟ ହରାଇଛି ।

ଶୀଳଭଦ୍ର ।। ହଠାତ୍ ଦିନେ ସକାଳର ସୂର୍ଯ୍ୟ ଉଦୟ ହେଲାବେଳକୁ ଦେଖାଯିବ ଋଷିପୁତ୍ରମାନେ ଆଉ ଆଶ୍ରମରେ ନାହାନ୍ତି । ହୋମକାଷ୍ଠ ସଂଗ୍ରହ ନ କରି ସେମାନେ ପଥର ସଂଗ୍ରହ କରିବେ, ମାଟି ଖୋଳି ଇଟା ତିଆରି କରିବେ ।

ବ୍ରହ୍ମଦତ୍ତ ।। ଆଃ... କି ଚମତ୍କାର ବୁଦ୍ଧି ! ସମ୍ରାଟ ବଜ୍ରବାହୁ ଏଥିପାଇଁ ତୁମକୁ ସ୍ୱର୍ଣ୍ଣପଦକ ଦେବେ ।

ଶୀଳଭଦ୍ର ।। କେହି ଯଦି ଏହାର କାରଣ ପୁଚ୍ଛା କରେ, କହିବ ଗୁରୁକୁଳ ଆଶ୍ରମର ଆଚାର୍ଯ୍ୟମାନେ ହଠାତ୍ ସେମାନଙ୍କ ଆଶ୍ରମରେ ଶିଷ୍ୟ ସଂଖ୍ୟା ବଢ଼ାଇ ଦେଇଥିବା ଫଳରେ ହସ୍ତିନାପୁରର ଅଧିକାଂଶ ଯୁବକ ଲମ୍ବା କେଶ ରଖି ସନ୍ୟାସ ଧର୍ମ ଗ୍ରହଣ କରିଛନ୍ତି । କାରଣ ସନ୍ୟାସୀ ହେବା ଆର୍ଯ୍ୟାବର୍ତ୍ତରେ ସହଜ ।

ବ୍ରହ୍ମଦତ୍ତ ।। ଖାଇବାକୁ ନ ମିଳିଲେ ଫଳମୂଳ ଖାଇ ଜୀବନଧାରଣ କରି ହେବ ।

ଶୀଳଭଦ୍ର ।। ସେମାନେ ଯେପରି ଇଚ୍ଛା ସେପରି ଜୀବନ ଧାରଣ କରନ୍ତି । ମୁଁ କହୁଛି ସମସ୍ତେ ଯଦି ପଣ୍ଡିତ ହେଇଯିବେ ତେବେ ଛାତ ନିର୍ମାଣ କରିବ କିଏ ? ଆମେ ସବୁ ଯିବୁ କୁଆଡ଼େ ?

ବ୍ରହ୍ମଦତ୍ତ ।। (ଶ୍ଳେଷାତ୍ମକ ଭଙ୍ଗୀରେ) ଏକ ବିରାଟ ପ୍ରଶ୍ନ ! 'ଆମେ ସବୁ ଯିବୁ କୁଆଡ଼େ ?'

ଶୀଳଭଦ୍ର ।। ଛାଡ଼ ସେ ସବୁ । ଚିନ୍ତା କରିବା ପାଇଁ ଆଉ ଧୈର୍ଯ୍ୟ ନାହିଁ । ବର୍ତ୍ତମାନ କିଛି ସୋମରସ ପାନ କରାଯାଉ ।

ବ୍ରହ୍ମଦତ୍ତ ।। ଅଧୋଗତି । ଘୋର ଅଧୋଗତି ।

ଶୀଳଭଦ୍ର ।। ଚାଖି ଦେଖ ଥରେ ! ସୋମଦ୍ୱୀପରୁ ଆସିଛି । ପୃଥିବୀରେ ବିରଳ । ଥରେ ପାନ କଲେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏକାକାର ହୋଇଯିବ ।

ବ୍ରହ୍ମଦତ୍ତ ।। ଚାଲ ଦିନ ପ୍ରାୟ ଶେଷ ହୋଇ ଆସିଲାଣି ।

ଶୀଳଭଦ୍ର ।। ସନ୍ଧ୍ୟାରେ ପ୍ରମୋଦଶାଳା ସ୍ୱପ୍ନମୟ ହେବ, ନୃତ୍ୟ ସଙ୍ଗୀତରେ ମୁଖରିତ ହେବ ।

ବୃହନ୍ନଳା ।। ସତେ ! ମୋର ମଧ୍ୟ ନୃତ୍ୟ କରିବା ପାଇଁ ଇଚ୍ଛା ହେଉଅଛି ।

ଶୀଳଭଦ୍ର ।। ଆସ ଅମାତ୍ୟ ! ଆଜି ଏହି ରଜତ ଜୟନ୍ତୀ ଉତ୍ସବରେ ନୂତନ ସ୍ୱର୍ଗ ଦେଖାଇବି । ସେହି ସ୍ୱର୍ଗରେ ଖାଲି ସୋମରସର ନଦୀ ବହିଯାଏ । ଆଉ ସେହି ସ୍ୱର୍ଗର ପୁଷ୍ପ ହେବ ମୁଗ୍ଧା ପରି । ସେଇଠି ଆଘ୍ରାଣ କରିହୁଏ ପ୍ରତି ମୁହୂର୍ତ୍ତରେ ନୂତନ ସୁଗନ୍ଧ । ସେ ସ୍ୱର୍ଗ ଏହି ଘୃଣ୍ୟ ରାଜକାର୍ଯ୍ୟଠାରୁ ଅନେକ ଦୂରରେ । ସେଇଠି ଶାନ୍ତି । ସେଇଠି ମନ୍ତ୍ରୀତ୍ୱର ଚରମ ସାର୍ଥକତା । ଆସ ବନ୍ଧୁ—
(ଶୀଳଭଦ୍ର ବୃହନ୍ନଳାଙ୍କୁ ଟାଣିଟାଣି ସେଠାରୁ ନେଇଗଲେ । ମଞ୍ଚରେ ଆଲୋକ, ସଙ୍ଗୀତ ଓ ପରିବେଶର ପରିବର୍ତ୍ତନ ଘଟିଲା । ମଞ୍ଚରେ ଏକ ସ୍ୱପ୍ନିଳ ପରିବେଶ । ପ୍ରବେଶ କଲେ ରାଣୀ କେତକୀଗନ୍ଧା ।)
କେତକୀଗନ୍ଧା ଶୁଭ୍ରବସ୍ତ୍ର ପରିହିତା ଏବଂ ତାଙ୍କ ପଦ ସଞ୍ଚାଳନରେ ଏକ ପ୍ରତିଧ୍ୱନିତ ନୂପୁରର ନିକ୍ୱଣ । ସ୍ୱର୍ଗଚ୍ୟୁତା ଏକ ବିରହିଣୀ ଯକ୍ଷ କନ୍ୟା ଭଳି ତାଙ୍କ ମୁଖରେ ଏକ ଗମ୍ଭୀର ଉଦାସ ଭାବ । ସେ ରାଜଉଦ୍ୟାନର ପଞ୍ଜୁରି ଭିତରେ ଆବଦ୍ଧ ଶାରୀ ପାଖକୁ ଗଲେ ;

କେତକୀଗନ୍ଧା ।। ମଇନା !
ହସ୍ତିନାର ରାଜବଂଶ ତେବେ କ'ଣ
ସନ୍ତାନ ବିହୁନେ
ହେବ ଏକ ଶୁଷ୍କ ମରୁଭୂମି ?
ପ୍ରାଚୁର୍ଯ୍ୟର ମଣିହର୍ମ୍ୟ ଜଳିଯିବ
ଏଇ ମୋର ଧୂସର ପ୍ରତୀକ୍ଷା
ଆଉ ବ୍ୟଥାତୁର ଗରମ ନିଶ୍ୱାସେ ?
ମୁଁ କ'ଣ ଚିରଦିନ ଚାହିଁଥିବି ଦୀର୍ଘଶ୍ୱାସୀ
ଝଡ଼ ପରି
ଏକତ୍ରିତ ଶୂନ୍ୟତାର କୁଣ୍ଡଳୀ ଆବର୍ତ୍ତେ ?
ରାଜା କ'ଣ ନପୁଂସକ ଏ ଦେଶର
ଆକାଶରେ ବୃଷ୍ଟିର କାର୍ପଣ୍ୟ ?

ଶସ୍ୟ କ୍ଷେତ୍ର ଶୁଷ୍କ ହୁଏ ।
ଅଭିଶାପ ଗଣ ଦେବତାର ?
[ଶାରୀଟି ଅସହାୟ ଭାବେ ଚିତ୍କାର କଲା । ଆବହ ସଙ୍ଗୀତ
କାରୁଣ୍ୟରେ ଗମ୍ଭୀର ଏବଂ ତୀବ୍ର ଆଲୋକର ଅସ୍ପଷ୍ଟ ଚକ୍ର
ଭିତରେ ଦେଖାଗଲା ସମ୍ରାଟଙ୍କର ଛାୟା ।]

ବଜ୍ରବାହୁ ।। ଆଶ୍ଚର୍ଯ୍ୟ ହୁଅନା ରାଣୀ
ମୁଁ ଏକ କାୟାହୀନ ଅଶରୀରି
ମନ ଅଛି, ସ୍ୱପ୍ନ ନିଷ୍ପ୍ରମିତ ।
ମୁଁ ବଞ୍ଚିଛି । କ୍ଷମତାର ଜଳନ୍ତା ନିଆଁରେ
ଏ୍ ରାଜ୍ୟର ପ୍ରଜା ହେବେ ନିଷ୍କଣ୍ଟକ
ସ୍ୱର୍ଣ୍ଣଯୁଗ ହସ୍ତିନା ନଗ୍ରର !
ଏକତା, ସମତା ପୁଣି ଭ୍ରାତୃଭାବ ମୈତ୍ରୀର ବନ୍ଧନ
ବିନା ପରିଶ୍ରମେ ହେବ ଅଦ୍ଭୁତ ଫସଲ ।
ପ୍ରଜାଗଣ ଝୁଲୁଥିବେ କଳ୍ପନା ଦୋଳିରେ
ଆଦର୍ଶର ସୋମରସ ପିଇ
ସମସ୍ତ ଜୈବିକ କ୍ଷୁଧା ଦ୍ରବୀଭୂତ
ଖାଦ୍ୟ ଏବଂ ବାସଗୃହ ବିରାଟ ସମସ୍ୟା ନୁହେଁ
ଧର୍ମକ୍ଷେତ୍ର ଭାରତ ଖଣ୍ଡରେ
ପାର୍ଥିବତା ଘୁଣ ପୋକ ।
ମୁଁ ବାଣ୍ଟୁଚି ଅପର୍ଯ୍ୟାପ୍ତ ରାତି, ପୁଣି
ସ୍ୱପ୍ନ ଲମ୍ବା ସହସ୍ର ବିଘାର ।
ମୁଁ କ୍ଷୁଦ୍ର ମାନବ ନୁହେଁ ଜୈବିକ ସୃଷ୍ଟିର
ମୁଁ ସମ୍ରାଟ ! ନରବିଷ୍ଣୁ ! ହେବ ନାହିଁ ଆମର ମିଳନ
ମୋ’ ଗୃହେ ସନ୍ତାନ ତେଣୁ କଳଙ୍କର ଚିହ୍ନ ।

କେତକୀଗନ୍ଧା ।। ସମ୍ରାଟ ! ସମ୍ରାଟ !!
ଆପଣ ମତେ କାହିଁକି ସୃଷ୍ଟିର ସ୍ୱପ୍ନରୁ ବଞ୍ଚିତ କଲେ
ସମ୍ରାଟ ? ମୁଁ ଟିକିଏ ସ୍ୱପ୍ନ ଚାହେଁ ସବୁଜ କ୍ଷେତର । ମୁଁ
ଟିକିଏ ସ୍ୱପ୍ନ ଚାହେଁ ପଲ୍ଲବିତ ବସନ୍ତର । ହେ ଭଗବାନ୍ !
[କେତକୀଗନ୍ଧା ଭାଙ୍ଗି ପଡ଼ିଲେ ଏକ କରୁଣ ବିଳାସ
ଭିତରେ । ଦୁଇପଟୁ ଦୁଇଜଣ ସଖୀଙ୍କର ପ୍ରବେଶ]

ପ୍ରଥମ ସଖୀ ।। ରାଣୀମା !

ଦ୍ୱିତୀୟ ସଖୀ ।। (ନିରୁତ୍ତରା ରାଣୀଙ୍କୁ)ରାଣୀମାଙ୍କ ମନ ଆଜି ବିରସ କାହିଁକି ?

କେତକୀଗନ୍ଧା ।। ସଖି ! ରାଣୀହଂସପୁର ଆଜି ଶୂନ୍ୟ ଲାଗୁଛି ମତେ । ସବୁ ଥାଇ ଯେମିତି କିଛି ନାହିଁ ମୋର ! ଏ ମୁକ୍ତା... ଏ ମରକତ.... ଏ ଇନ୍ଦ୍ରନୀଳମଣି.... ଏ ସୁବର୍ଣ୍ଣ ପିଞ୍ଜୁରି.... କିଛି ମୋର ଲୋଡ଼ା ନାହିଁ ।

ପ୍ରଥମ ସଖୀ ।। ଇଏ ଗୋଟେ କଥା ରାଣୀମା ? ରାଜପ୍ରାସାଦରେ ଆଜି ରଜତ ଜୟନ୍ତୀ । ନୃତ୍ୟଗୀତ, ଧୂପଗନ୍ଧ, ଶତ ଉପଚାରେ ସ୍ୱପ୍ନିଳ ଏ ପରିବେଶ । ପ୍ରମୋଦଶାଳାରେ ଏଇ ଦେଖ ଜହ୍ନ ଉଠେ । ଆକାଶର ଓଢ଼ଣାରେ ତାରକସି, ଜରିଫୁଲ– ଅଜସ୍ର ସମ୍ଭାର ।

ଦ୍ୱିତୀୟ ସଖୀ ।। ସଭାସଦ, ପାରିଷଦ, ମନ୍ତ୍ରୀ, କଟୁଆଳ<br>
ରାଜା ଆଉ ବିଦୂଷକ ଶିଳ୍ପୀ କାରିଗର<br>
ସମସ୍ତେ ପାଗଳ,<br>
ଉଚ୍ଛୁଳି ଉଠୁଛି ଆଜି ହସ୍ତିନା ନଗର ।<br>
ରାଣୀମା ଗୋ' !<br>
ଖୋଲି କୁହ ମନ ଆଜି ବିରସ କାହିଁକି ?

କେତକୀଗନ୍ଧା ।। ଶୂନ୍ୟତା ଏତେ ସଖୀ, ଏତେ ଧନ, ଏତେ ଅଳଙ୍କାର, ତଥାପି ମୁଁ ଜଳେ କାହିଁ ସୀମାହୀନ କ୍ରମଶଃ ଯନ୍ତ୍ରଣା । ପ୍ରତିଶ୍ରୁତିହୀନ ରାତି । ମୋ' ସୁପ୍ତ ଚେତନା ସବୁ ସ୍ନାୟୁର ବୀଣାରେ/ଗାଉଛନ୍ତି ଅଣାୟତ୍ତ ପ୍ରାର୍ଥନା ସଙ୍ଗୀତ ।

ପ୍ରଥମ ସଖୀ ।। ଜାଣେ । ପ୍ରମୋଦଶାଳାର ଜହ୍ନ ଅନେକ ଫାଙ୍କିଲ । ସିଏ ନିଶ୍ଚେ ଭିଆଇଛି ରାଣୀମା'ଙ୍କ ମନତଳେ ଆଉ ଏକ ଜଳନ୍ତା ଉହ୍ଲେଇ ।

ଦ୍ୱିତୀୟ ସଖୀ ।। ଏବଂ ରାଣୀମା'ଙ୍କ ଦେହ, ମନ, ସ୍ନାୟୁ ବି ଉତ୍ତପ୍ତ । ଖାଲି ଉଠେ ଦୀର୍ଘଶ୍ୱାସ । ଦୀର୍ଘଶ୍ୱାସେ ଗଢ଼ି ଏକ ନୂତନ ଆକାଶ – ରାଣୀ ମା' କି ଖୋଜୁଛନ୍ତି ହଜିଲା ବିଶ୍ୱାସ ?

କେତକୀଗନ୍ଧା ।। ହଁ ସଖି ! ବରଂ ଅନେକ ଭଲ ଦୀର୍ଘଶ୍ୱାସ, ମେଘୁଆ ଆକାଶ କିମ୍ବା ଲୁହର ଶ୍ରାବଣ, ବୈଶାଖର ରୌଦ୍ରତପ୍ତ ବାଲି ଏବଂ କ୍ଷୁଧା ଉପବାସୀ ଦୁଃଖ କାଳ ପରି ।<br>
ଏଠି ସବୁ ଶୂନ୍ୟ, ଶୂନ୍ୟ ରାଜା ।<br>
ଶୂନ୍ୟ ପୁଣି ରାଣୀ ହଂସପୁର ।

ପ୍ରଥମ ସଖୀ ।। ଏ' ଲବଙ୍ଗ ! ରାଣୀମାଙ୍କର ନିଶ୍ଚୟ କ'ଣ ହୋଇଚି ।
ଦ୍ୱିତୀୟ ସଖୀ ।। ନାଇଁ ମ ଅଳେଇଚ ! ଢଙ୍ଗ ଦେଖି ମନ ଉଚ୍ଚାଟ ।
ପ୍ରଥମ ସଖୀ ।। ହଜିଥିଲେ ଖୋଜି ଦେବି, ଭାଙ୍ଗିଥିଲେ ଆଣିବି ଗଢ଼ାଇ
ସଜନୀ କେତେକୀଗନ୍ଧା !
କୁହ ଦୁଃଖ, କୁହ ଅଘଟଣ, କିଛି ନ ଲୁଚାଇ ।
କେତକୀଗନ୍ଧା ।। ଦେବ ଆଣି ?
ଦେଇ କି ପାରିବ ସଖୀ ଆଞ୍ଜୁଳାଏ ଶିଶୁର କାନ୍ଦଣା ?
କିଛି ଭଙ୍ଗା ଅଭିମାନ ଅଝଟ ପଣିଆ
ଦେଇକି ପାରିବ ମତେ ମାତୃତ୍ୱର ଅଭିଶାପ
ପ୍ରଥମ ଯନ୍ତ୍ରଣା ?
ଦ୍ୱିତୀୟ ସଖୀ ।। ରାଣୀ ମା !
କେତକୀଗନ୍ଧା ।। ହଁ ସଖୀ, ମୁଁ ନିଷ୍ଫଳା ।
ପ୍ରଥମ ସଖୀ ।। ଏ ହସ୍ତିନା ନଗର ପ୍ରଜାଗଣ ତୁମର ପୁତ୍ରତୁଲ୍ୟ ରାଣୀ ମା' !
୨ୟ ସଖୀ ।। କିଏ ଜାଣେ ଅଭିଶାପ କେବେ ହେବ ଶେଷ ? ଜନ୍ମନେବ
ନୂତନ ଗାନ୍ଧାରୀ । ଏମିତି ବି ହୋଇପାରେ ତମେ ହେବ
କୌରବ ଜନନୀ ।
କେତକୀଗନ୍ଧା ।। ମୁଁ ଶତପୁତ୍ରର ଜନନୀ ହେବାକୁ ଚାହେଁନା ସଖି ! ଚାହେଁନା
ମୁଁ ସୂଚୀ ଅଗ୍ର ଜମି ପାଇଁ ଯୁଦ୍ଧର ତାଣ୍ଡବ । କିନ୍ତୁ, କିନ୍ତୁ
କେଉଁ ଅଭିଶାପେ ସଖି !
ଅଙ୍ଗେ ମୋର ଏଇ ବିଷ ଜ୍ୱାଳା ?
ନିଦ୍ରାହୀନ ନୟନରେ ନିତି ଭୋଗେ ବୈଧବ୍ୟ ଯନ୍ତ୍ରଣା ?
ପ୍ରଥମ ସଖୀ ।। ଆଃ ! ସେମିତି କୁହନ୍ତୁନି ରାଣୀ ମା ! ଅଲକ୍ଷଣା କଥା ।
ଦ୍ୱିତୀୟ ସଖୀ ।। ଆପଣ ବିଶ୍ରାମ କରନ୍ତୁ ରାଣୀ ମା ! କାଳେ ନିଦ୍ରା
ଆସିପାରେ !
କେତକୀଗନ୍ଧା ।। ନିଦ୍ରା ? ସେ କେଉଁ ଦେଶର ଫୁଲ ?
କେତେ ତା'ର ଘୁମନ୍ତ ପାଖୁଡ଼ା ?
ପାଖୁଡ଼ାରେ ରଙ୍ଗ କେତେ ? ଇନ୍ଦ୍ରନୀଳ ମୁକ୍ତାର ଶୋଭା ?
ସେ ଶୋଭାର କାନ୍ତି କେତେ ? ବିଦଗ୍ଧ ଚନ୍ଦ୍ରମା ?
ଆଃ... ନିଦ୍ରା ! ସାତତାଳ ପାଣିତଳେ ସତେ ଅବା
ପ୍ରବାଳର ଦ୍ୱୀପ । କୁହୁଡ଼ିର ମାଳତୀ ଲତାରୁ ଝରୁଥିବା
ଟୋପାଏ ଯମୁନା ଏବଂ କିଛି କଦମ୍ବର ସ୍ୱପ୍ନ ।

ପ୍ରଥମ ସଖୀ ।। ରାଣୀ ମା ତମର ସ୍ୱପ୍ନ ଲୋଡ଼ା ?

କେତକୀଗନ୍ଧା ।। ହଁ ସଖି ! ସ୍ୱପ୍ନ । ସ୍ୱପ୍ନ ଏକ ନବଜାତକର ।

ଦ୍ୱିତୀୟ ସଖୀ ।। ହଁ ରାଣୀ ମା ! ଆପଣ ଚାହିଁଲେ କୋଟି କୋଟି ସ୍ୱପ୍ନ ଆସିଯିବ ।

ପ୍ରଥମ ସଖୀ ।। ଆପଣ ଚାହିଁଲେ ହସ୍ତିନାର ପ୍ରମୋଦଶାଳାରେ ସ୍ୱପ୍ନ ବିକ୍ରୀ ହେବ ।

କେତକୀଗନ୍ଧା ।। କ'ଣ କହୁଚ ସଖୀ ? ସ୍ୱପ୍ନ ମଧ ଏଇ ନଗ୍ରେ କିଣାବିକା ହୁଏ ?

ଦ୍ୱିତୀୟ ସଖୀ ।। ଅବନ୍ତୀ ନଗରୁ ଏକ ଆସିଛି ସାଧବ, ସୁଦର୍ଶନ !

ବଇଁଶୀ ବଜାଏ ସିଏ । ମୂର୍ଚ୍ଛନାରେ ବାୟା କଲା ସବୁ
ଗୋପୀମନ

ସିଏ ପୁଣି ଚମ୍ପାଗଛ ଝାଡ଼ି କିଛି ଆଣିଛି ସପନ,
ବିକିବାକୁ ହସ୍ତିନା ନଗରେ ।

କେତକୀଗନ୍ଧା ।। ସ୍ୱପ୍ନର ସାଧବ ? ଆଶ୍ଚର୍ଯ୍ୟ !

ପ୍ରଥମ ସଖୀ ।। ପିନ୍ଧିଛି ସେ ଜରିପାଟ ମରକତ ରଙ୍ଗ ।

ଶିରରେ ମୁକୁଟ । ବାହୁରେ ତା ବାଜୁବନ୍ଧ ସୁବର୍ଣ୍ଣ ଛାଉଣୀ ।
ସ୍କନ୍ଧରେ ତା ଝୁଲୁଅଛି ଅତିକାୟ ମୁଣି ।
ଜାଣ ରାଣୀ ? ଯେତେ ଇଚ୍ଛା ମାଗ—
ସ୍ୱପ୍ନ ଦେବ ସେଇଥିରୁ ଆଣି ।

କେତକୀଗନ୍ଧା ।। ଦେଇ ପାରିବ ? ମତେ ଦେଇପାରିବ ସେ ରାତିଏ ସପନ ?

ପ୍ରଥମ ସଖୀ ।। ମୂଲ୍ୟ ଲୋଡ଼ା କିନ୍ତୁ !

କେତକୀଗନ୍ଧା ।। ଦେଇପାରେ ରାଣୀ ହଂସପୁର !

ପ୍ରଥମ ସଖୀ ।। ସେ ସାଧବ ଚାହେଁ ନାହିଁ ତାହା
ରତ୍ନ ମୁକ୍ତା ଯଥେଷ୍ଟ ତା'ଠାରେ !

କେତକୀଗନ୍ଧା ।। ତେବେ ? କିବା ମୂଲ୍ୟ ଦେବି ମୁହିଁ ଅତି ଅକିଞ୍ଚନ ?

ଦ୍ୱିତୀୟ ସଖୀ ।। ଅବନ୍ତୀ ସାଧବ ଚାହେଁ
ସ୍ୱପ୍ନ ବିନିମୟେ ଗୋଟିଏ ହୃଦୟ ।
ଯେଉଁ ନାରୀ ଦେଇପାରେ ଅନ୍ତରର ସବୁ ଅନୁଭୂତି
ପ୍ରେମ, ଈର୍ଷା, କରୁଣା ଓ କୋହ
ଅବନ୍ତୀ ସାଧବ ଦିଏ ତାକୁ ଖାଲି ସପନର ମୋହ ।

କେତକୀଗନ୍ଧା ।। ମୁଁ ରାଜ ସଖୀ, କାଣିଚାଏ ସ୍ୱପ୍ନ ପାଇଁ ମୁଁ ଆଜି କାଙ୍ଗାଳିନୀ,
କାଣିଚାଏ ସ୍ୱପ୍ନ ପାଇଁ ଆଜି ମୁଁ ନିଷ୍ଫଳା ।
ମୁଁ ହୃଦୟ ଦେବି, ମନ ଦେବି, ଦେବି ମୋର ପ୍ରେମ ଈର୍ଷା
କରୁଣା ଓ କୋହ
ମତେ ଖାଲି ସ୍ୱପ୍ନ ଟିକେ ଦିଅ ।

ଦ୍ୱିତୀୟ ସଖୀ ।। ବେଶ୍, ଆଖି ବୁଜ ତେବେ !

କେତକୀଗନ୍ଧା ।। (ଆଖିବୁଜି) ତା'ପରେ ?
[ଦୂରନ୍ତ ଏକ ବଂଶୀସ୍ୱନ ଭାସି ଆସିଲା]

ପ୍ରଥମ ସଖୀ ।। କିଛି ଶୁଣି ପାରୁଛ ?

କେତକୀଗନ୍ଧା ।। କିଛି ଶୁଣିପାରୁନି ।

ଦ୍ୱିତୀୟ ସଖୀ ।। କିଛି ଦେଖି ପାରୁଛ ?

କେତକୀଗନ୍ଧା ।। କିଛି ଦେଖିପାରୁନି ।

ଦ୍ୱିତୀୟ ସଖୀ ।। ଏଇ ଦେଖ ! କଦମ୍ବ ବନରେ ଫୁଟେ ଅଜସ୍ର କମ୍ପନ

ପ୍ରଥମ ସଖୀ ।। ଏଇ ଶୁଣ ! ଯମୁନା ବାଲିରେ କାର ନୂପୁର ନିକ୍ୱଣ
ରୁଣୁଝୁଣୁ ରୁଣୁଝୁଣୁ ପଦ ସଞ୍ଚାଳନ !
[ସଙ୍ଗୀତ ଆହୁରି ଆବେଗମୟ ହେଲା]

କେତକୀଗନ୍ଧା ।। ମଧୁର । ମଧୁର ଏଇ ଧ୍ୱନି । କେଉଁଠୁ ଆସୁଛି ସଖୀ ?
ଏହା ସ୍ୱପ୍ନ ନୁହେଁ ତ ?

ପ୍ରଥମ ସଖୀ ।। ନା ସ୍ୱପ୍ନର ପ୍ରାରମ୍ଭ ।

କେତକୀଗନ୍ଧା ।। ଅବନ୍ତୀ ସାଧବ ଏ ଯାଏ ଆସିନି ?

ପ୍ରଥମ ସଖୀ ।। ନା ବଉଳ... ସ୍ୱପ୍ନର ବଣିକକୁ ଡାକ ତ... ରାଣୀ ମା
ଉତଳା ହେଲେଣି !

ଦ୍ୱିତୀୟ ସଖୀ ।। ସ୍ୱପ୍ନ... ହେ ସ୍ୱପ୍ନ....
[ସ୍ୱପ୍ନ ଶବ୍ଦଟି ବାରମ୍ବାର ପ୍ରତିଧ୍ୱନିତ ହେଲା ।
ସଙ୍ଗୀତ ମଧୁରତର]

କେତକୀଗନ୍ଧା ।। (ସ୍ୱପ୍ନାବିଷ୍ଟ ସ୍ୱରରେ) ମଧୁର ! ଅତି ମଧୁର ! ତନ୍ଦ୍ରାଘେରା
ସତେ ଏଇ ସ୍ୱପ୍ନର ଇଲାକା । ସଖି ! ମୁଁ ଚାହେଁ ସ୍ୱପ୍ନ !
ଖାଲି ସ୍ୱପ୍ନ ଆଉ ସ୍ୱପ୍ନ !

ପ୍ରଥମ ସଖୀ ।। ଚକ୍ଷୁ ମୁଦ୍ରିତ କର । ହୃଦୟକୁ ଏକତ୍ରିତ କର ।

କେତକୀଗନ୍ଧା ।। ଆଃ ! ମୋର ଅଂଗ ଅବଶ ହେଉ ପଡୁଛି...

ପ୍ରଥମ ସଖୀ ।। (ହାତତାଳି ବଜାଇ ଇଙ୍ଗିତ କରି ଡାକିଲେ) ସ୍ୱପ୍ନ ! ସପନ
ବଣିକ !

ଦ୍ୱିତୀୟ ସଖୀ ।। ସପନ ବଣିକ ଆସ ଭିଜି ଯାଉ ରାଣୀମାଙ୍କ ଶୁଷ୍କ ଉପତ୍ୟକା
(ବର୍ତ୍ତମାନ ସଂଗୀତରେ ନୃତ୍ୟର ଛନ୍ଦ । ଅବନ୍ତୀ ସାଧବ
ପବନରେ ପହଁରି ପହଁରି ଆସିଲେ । ବର୍ଣ୍ଣାଢ଼୍ୟ ବେଶ ।)

ଅବନ୍ତୀ ସାଧବ ।। ହସ୍ତିନା ନଗର ରାଣୀ କେତକୀଗନ୍ଧାଙ୍କୁ
ଅବନ୍ତୀ ସାଧବ କଲେ ବିନମ୍ର ପ୍ରଣତି ।

କେତକୀଗନ୍ଧା ।। (ଚକ୍ଷୁ ଖୋଲି) କିଏ ତୁମେ ? ଶାପଗ୍ରସ୍ତ ଦେବତା କି
ସତେ ? ଅବା ମୋର ଅଚେତନ କାମନାଙ୍କ ଦେହଧାରୀ
ରୂପ ? କିଏ ତୁମେ ?
ସ୍ନିଗ୍ଧ ଏଇ ଦୃଷ୍ଟିପାତ, ଏଇ ହାସ୍ୟ ଗନ୍ଧର୍ବ ଦୁର୍ଲଭ ।
ବର୍ଣ୍ଣାଢ଼୍ୟ, ବିଚିତ୍ର !
ସ୍ୱାଗତ ! ହେ ସାଧବ ! ତୁମକୁ ସ୍ୱାଗତ !

ଅବନ୍ତୀ ସାଧବ ।। ମହାରାଣି ! ଦେବତା ଗନ୍ଧର୍ବ ନୁହେଁ ସାମାନ୍ୟ ସାଧବ ।
ସ୍ୱାଗତର ଯୋଗ୍ୟ ନୁହେଁ ମୁଁ ଛାର ସେବକ ।
ଛାମୁ ମୋ' ପ୍ରଣମ୍ୟା ଦେବୀ, ଆଦେଶନ୍ତୁ
କି କାରଣେ ସ୍ମରିଲେ ଏଇ ସେବକରେ ?

କେତକୀଗନ୍ଧା ।। ଆଃ ! ସୁନ୍ଦର ଆନନ ।
ସୁନ୍ଦର ଏ ଅଙ୍ଗରାଗ ବସ୍ତ୍ର ପରିଧାନ ।
ମନେହୁଏ ସ୍ୱପ୍ନ ଯେମିତି ସତରେ ବିମ୍ବିତ ।
ରାଜହଂସ ଅବା କେଉଁ ସ୍ୱପ୍ନ ସରୋବରୁ ଆସିଛି
ସରଣୀ ଭୁଲି ଏ ବିଦଗ୍ଧ ପୁରେ;
ଅଲୋଡ଼ା ସମ୍ପଦ ଯହିଁ ଜୀବନକୁ ରିକ୍ତ ତିକ୍ତ କରେ ।

ଅବନ୍ତୀ ସାଧବ ।। ଅବନ୍ତୀ ନଗ୍ରର ଜଣେ ସାମାନ୍ୟ ସାଧବ; ସ୍ୱପ୍ନବିକ୍ରୀ ପେଷା
ମୋ'ର ।
ସ୍ପର୍ଶେ ମୋ' ଟାଙ୍ଗର ଭୂଇଁ ଶ୍ୟାମଳାଙ୍ଗୀ ହୁଏ
ମରୁଭୂମି ଗାଇ ଉଠେ ମଦିର ମହ୍ଲାର
ମୋ' ସ୍ପର୍ଶରେ ପଦ୍ମ ଫୁଟେ ପୁଷ୍କରିଣୀ ନୀରେ
ମୁଁ ଛୁଇଁଲେ ଅଙ୍ଗେ ଅଙ୍ଗେ କାଉଁରୀ ଶିହରେ !
ପଲ୍ଲବିତ ହୁଏ କେତେ ଲଳିତ ରୋମାଞ୍ଚ
ବୃକ୍ଷସମ ସ୍ନିଗ୍ଧ ଛାୟା, ପୁଷ୍ପସମ ମଧୁ ବିତରଣ
ମୋ'ର ବ୍ୟବସାୟ ।
ମୂଲ୍ୟ କିନ୍ତୁ ତା'ର ଏକ ବିମୁକ୍ତ ହୃଦୟ ।

କେତକୀଗନ୍ଧା ।। ହୃଦୟ; (କରୁଣ ସ୍ୱରରେ) ଆଃ ! କି ଅଦ୍ଭୁତ ଶବ୍ଦ ତାହା
କିବା ଅର୍ଥ କିବା ଭାବବୋଧ
ହସ୍ତିନା ନଗର ରାଣୀ କେତକୀଗନ୍ଧାର
ଏ ଶବ୍ଦ ଅବୋଧ ।
ଆହ୍ଲାଦ ଆକାଶ ମେଢ଼
ଛାତି ତଳେ ଖାଲି ଏକ ଶୂନ୍ୟ ହାହାକାର
ହୃଦୟ କେଉଁଠି ଆର୍ଯ୍ୟ ?
ସକଳ ବିବିକ୍ତ ।

ଅବନ୍ତୀ ସାଧବ ।। ଅତିକ୍ରମି ବହୁ ନଗ୍ର, ଶତ ଜନପଦ
ତେର ନଈ ସପ୍ତସିନ୍ଧୁ ଅରଣ୍ୟ ପ୍ରାନ୍ତର
ଆଷାଢ଼ର ମେଘ ଯଥା
ଭ୍ରମି ଭ୍ରମି ଅନେକ ଆକାଶ । ମୁଁ ଆସିଛି
ଖୋଜି ଖୋଜି ସେହି ସ୍ଥାନ, ସେହି ପରିବେଶ
ଯେଉଁଠି ବଣିଜ ମୋର ଅତି ଆବଶ୍ୟକ
ଏଇ ସେଇ ହସ୍ତିନାର ପ୍ରମୋଦ ଉଦ୍ୟାନ ।

କେତକୀଗନ୍ଧା ।। ସତେ ଆର୍ଯ୍ୟ ! କି ସୌଭାଗ୍ୟ ମୋର ସତେ !
ଏତେଦିନ ଶୂନ୍ୟ ଶୂନ୍ୟ ପ୍ରତୀକ୍ଷାର ଅନ୍ତେ
ମିଳିଛି ସାଂତ୍ୱନା କିଛି
ସ୍ୱପ୍ନର ଉପାୟ ଅବା ଏ ନିସଙ୍ଗ ଜୀବନର
କିଛି ଗତ୍ୟନ୍ତର ।

ପ୍ରଥମ ସଖୀ ।। ଯଥେଷ୍ଟ ହେଲାଣି ଆର୍ଯ୍ୟ ସମ୍ଭାଷଣ ପ୍ରତି ସମ୍ଭାଷଣ
ରାଣୀ ମା' ବ୍ୟାକୁଳ ଖୁବ୍
କିଣିବାକୁ ସ୍ୱପ୍ନର ସଉଦା ।

ଦ୍ୱିତୀୟ ସଖୀ ।। ଦିଅ ଆର୍ଯ୍ୟ ସେହି ଦ୍ରବ୍ୟ !
ସମୁଦ୍ରର ଢେଉ ଯେମିତି ରଙ୍ଗ କିଣେ
ଉଦିତ ସୂର୍ଯ୍ୟରୁ ।
ହେ ଆର୍ଯ୍ୟ, ତୁମରି ସ୍ୱପ୍ନ ସଙ୍ଗରୁ ଜୀବନ
ରାଣୀମାଙ୍କ ନିଛାଟିଆ ବଞ୍ଜର ମନରେ ।

ଅବନ୍ତୀ ସାଧବ ।। ଚିନ୍ତାର କାରଣ ନାହିଁ । ଦେଉଛି ସେ ସ୍ୱପ୍ନ
ଯୁଗେ ଯୁଗେ ବଞ୍ଚିତକୁ ବଞ୍ଚାଇବା ସୂତ୍ର
ହତାଶ ବୁକୁରେ ରୋପି ସପନର ମଧୁମୟ ତାରା ।

ମୁହିଁ ସେଇ ସୌଦାଗର
ବିକ୍ରୀ କରେ ସଞ୍ଜୀବନୀ ମନ୍ତ୍ର !
କିନ୍ତୁ....

କେତକୀଗନ୍ଧା ।। କିନ୍ତୁ କ'ଣ ଆର୍ଯ୍ୟ ?
ମତ୍ସ୍ୟ ଯେହ୍ନେ ଧରାଦିଏ ଧୀବର ଜାଲରେ
ପତଙ୍ଗ ଯେସନେ ଆସେ ଶିଖା ନିକଟକୁ
ସେଭଳି ପ୍ରସ୍ତୁତ ମୁହିଁ ସରଳ ବିଶ୍ୱାସେ ।
ଉନ୍ମୁକ୍ତ ଅଗଣା ମୋର, ଏ ଶୂନ୍ୟ ହୃଦୟ
ପ୍ରବାହିତ ହୁଏ ଯଥା ମନ୍ଦ ସମୀରଣ ।

ଅବନ୍ତୀ ସାଧବ ।। କିନ୍ତୁ ତା' ପୂର୍ବରୁ ମୁଁ ଚାହେଁ ପ୍ରମୋଦଶାଳା ଶୂନ୍ୟ ହେବ ।
ଚନ୍ଦ୍ର ଆଉ ପୁଷ୍ପ ବିନା ଏ ସ୍ୱପ୍ନକୁ କେହି କେବେ
ଦେଖିପାରେ ନାହିଁ
ସମୀରଣ ସୌରଭ ଛଡ଼ା ଅନ୍ୟ କିଏ
ଏ ସ୍ୱପ୍ନକୁ ଛୁଇଁ ପାରେ ନାହିଁ ।

ପ୍ରଥମ ସଖୀ ।। ଆମ୍ଭେ ତେବେ ଲୁଚିଅଛୁ ପୁଷ୍ପ ବିଥୀକାରେ !

କେତକୀଗନ୍ଧା ।। ଦେଖିବନି କିନ୍ତୁ ।

ଦ୍ୱିତୀୟ ସଖୀ ।। ମୁଁ ଲୁଚିବି ସିଂହାସନ ତଳେ

କେତକୀଗନ୍ଧା ।। ମୁଁ ଲଜ୍ଜାରେ ତରଳି ଯିବି

ଦ୍ୱିତୀୟ ସଖୀ ।। ତା' ନ ହେଲେ ଲତାକୁଞ୍ଜ ତଳେ ?

କେତକୀଗନ୍ଧା ।। କିନ୍ତୁ ସଖୀ, ଅନେକ ଦୂରରେ....
[ସଖୀଦ୍ୱୟ ହସି ହସି ଚାଲିଗଲେ ଦୁଇପଟେ]

ଅବନ୍ତୀ ସାଧବ ।। ମୁଦ୍ରିତ କରନ୍ତୁ ତେବେ ନୀଳପଦ୍ମ ନେତ୍ର ।

କେତକୀଗନ୍ଧା ।। ହେଉ ତେବେ । ଚକ୍ଷୁ ବନ୍ଦ କଲି

ଅବନ୍ତୀ ସାଧବ ।। ଗ୍ରୀବା ଉତ୍ତୋଳନ.....

କେତକୀଗନ୍ଧା ।। କଲି

ଅବନ୍ତୀ ସାଧବ ।। ହସ୍ତକୁ ଉର୍ଦ୍ଧ୍ୱରେ ରଖି କର ପ୍ରସାରିତ । ସେ ହସ୍ତ ଯେପରି
ଛୁଏଁ ଦିଗ୍‌ବଳୟ ସୀମା । ଯେପରି ଗୋଟିଏ ତରୁ ଉନ୍ମୁକ୍ତ
ଶାଖାରେ ଛୁଇଁବାକୁ ବ୍ୟଗ୍ର ହୁଏ ଆକାଶର ସୀମା ।

କେତକୀଗନ୍ଧା ।। (ଚେଷ୍ଟା କରି) ହେଲା ଆର୍ଯ୍ୟ ?

ଅବନ୍ତୀ ସାଧବ ।। ଠିକ୍ । 'ତମେ ବର୍ତ୍ତମାନ ମନ୍ତ୍ରମୁଗ୍ଧା !!'

[ହଠାତ୍ ମଞ୍ଚର ପ୍ରତ୍ୟେକ କୋଣରେ ବିଭିନ୍ନ ରଙ୍ଗର ଏକ ଆଦିମ, ମିଶ୍ରିତ ସ୍ରୋତ । ରଙ୍ଗ ସବୁ ବର୍ଗାକାର, ବୃତ୍ତାକାର ଏବଂ କିଛି ବାରି ହୁଏ ନାହିଁ କେଉଁ ରଙ୍ଗ କାହା ସହିତ ମିଶି କେଉଁ ରଙ୍ଗ ସୃଷ୍ଟି ହୁଏ । ସଂଗୀତରେ ଏକ ଅପୂର୍ବ ଚଞ୍ଚଳତା । ଜଳତରଙ୍ଗ, ସନ୍ତୁର, ସୀତାର ପ୍ରଭୃତି ଯନ୍ତ୍ର ବ୍ୟବହାର କରାଯାଇ ପାରେ । ଅବନ୍ତୀ ମାଧବ ଓ କେତକୀଗନ୍ଧାଙ୍କର ଏଇପରି ସମସ୍ତ ସମ୍ବାଦ ସହ କୋଣାର୍କ କିମ୍ବା ଅଜନ୍ତାର ବିଭିନ୍ନ ଭଙ୍ଗୀ ଦେଖାଯିବ ଏକ ଅନ୍ତହୀନ ସଂଗମର ରୂପକଳ୍ପ ପରି ।]

ଏଇ ଦେଖ ମନ୍ଦିରର ଦ୍ୱାର ରୁଦ୍ଧ
ଚତୁର୍ଦ୍ଦିଗେ ରଙ୍ଗର ପ୍ରଳାପ ଏବଂ ଶେଷ ଅନ୍ଧକାର ।
ଏଇଠି ଜାଗ୍ରତ ହୁଏ ସୁପ୍ତ ସ୍ନାୟୁ ହସ୍ତିନା ନଗ୍ରର ।
ଏ ସ୍ୱପ୍ନରେ ନିବାରିତ ତୃଷା କେତେ ମୃତ୍ତିକା ବକ୍ଷର ।
ଜାଗ ଶବ୍ଦ, ଜାଗ ରକ୍ତ, ଜାଗିଉଠ ସୃଷ୍ଟିର ଅଙ୍କୁର
ଏଇଠି ପ୍ରସ୍ତର ଗାତ୍ରେ ଲେଖାହୁଏ ଆନନ୍ଦ ଓ ଯନ୍ତ୍ରଣାର
ଅଲିଖିତ ଇତିହାସ ।
ତୁମ ନୀରବିତ କଣ୍ଠେ ମୁହୂର୍ତ୍ତେ ସଂଗୀତ ପାଇଁ
ମୁଁ ଚାଲିବି ଲକ୍ଷ ବର୍ଷେ
ବନସ୍ପତି ସାରା ଝରୁ ମଧୁର କଣିକା
ମଧୁ ଝରୁ ଗାଭୀର ସ୍ତନରୁ
ସମୁଦ୍ରରୁ ମଧୁ ଝରୁ ପାହାନ୍ତି ଉଷାରୁ
ସୃଷ୍ଟି ସାରା ମଧୁ ଝରୁ ପୁଷ୍ପ ପାଖୁଡ଼ାରୁ
ମଧୁସ୍ୱପ୍ନ ମଧୁମୟ ଅଙ୍ଗସାରା ମଧୁମୟ ଛନ୍ଦ ମଧୁମୟ
କାନ୍ତିରୁ ଝରୁଛି ମଧୁ ହେଉ ଏହି ସୃଷ୍ଟି ମଧୁମୟ....

(କ୍ରମଶଃ ଉପରୋକ୍ତ ଶବ୍ଦଗୁଡ଼ିକ ମନ୍ତ୍ରପରି ଉଚ୍ଚାଟନ ସ୍ୱରରେ ଆବୃତ୍ତ ହେଲାବେଳେ ସେମାନଙ୍କ ଉପରେ ଝରି ପଡୁଛି ଆକାଶରୁ ଫୁଲର ପାଖୁଡ଼ା ଏବଂ ଅବନ୍ତୀ ମାଧବ ଓ କେତକୀଗନ୍ଧା ଏକ ରମଣୀୟ ତୃପ୍ତିର ମୁଦ୍ରାରେ ସ୍ଥିର ହୋଇ ଯାଉ ଯାଉ ନଇଁ ଆସିଛି ପରଦା । ସଙ୍ଗୀତ କିନ୍ତୁ ପ୍ରସାରିତ ।)



# ଦ୍ୱିତୀୟ ଅଙ୍କ

[ଆଲୋକ ଜଳିଲା ବେଳକୁ ଦେଖାଗଲା ସେଇ ପ୍ରମୋଦଶାଳା ।

ରାଜଭଣ୍ଡାରି ଆଗରୁ ଆସି ସିଂହାସନ ପାଖରେ ବସି ରାଜାଙ୍କର 'କ୍ଷୌର-ଉତ୍ସବ' ପାଇଁ ଆୟୋଜନ କରୁଛନ୍ତି । ବିଦୂଷକ ଦ୍ୱୟ ଉତ୍ସବର ଅବ୍ୟବହିତ ପୂର୍ବରୁ ଦାସକାଠିଆ ମାଧ୍ୟମରେ ରାଜାଙ୍କ ବୃତ୍ତାନ୍ତ ବର୍ଣ୍ଣନା କରୁଅଛନ୍ତି । ସମ୍ରାଟ ଆସିଲାବେଳେ ମୃତ୍ତିକାଭାଣ୍ଡଧାରୀ ପ୍ରଥମଅଙ୍କ ଅପେକ୍ଷା ଏକ ବୃହତ୍ତର ଭାଣ୍ଡ ଆଣି ପ୍ରବେଶ କରିବେ । ରାଜା ବଜ୍ରବାହୁ ଏକ ଶ୍ୱାନ ପରିଚାଳିତ କ୍ଷୁଦ୍ର ସ୍ଲେଜ୍‌ଗାଡ଼ି ଭଳି ଯାନରେ ପ୍ରବେଶ କରିବେ । କୁକୁରଟି ଗୋଟିଏ ଖଦଡ଼ ଜାମା ପିନ୍ଧିଥିବ ଓ ସେଥିରେ 'ସମାଜବାଦ' ଲେଖା ହୋଇଥିବ ।

ଯଦି କୌଣସି ଯାତ୍ରାଦଳ ଏହି ଦୃଶ୍ୟଟିକୁ ଏଇଭଳି ସଜାଇବାରେ ସକ୍ଷମ ନୁହନ୍ତି, ରାଜା ପୂର୍ବବତ୍ ପଦବ୍ରଜରେ ପ୍ରମୋଦଶାଳାକୁ ବିଜେ କରିପାରିବେ ।]

(ବିଦୂଷକ ଦ୍ୱୟଙ୍କ ଗୀତ)

ଶୁଣ ଶୁଣ ସୁଜ୍ଞଜନେ ଦେଇ ମନ କର୍ଣ୍ଣ
ମହାରାଜାଙ୍କର କଥା କରିବା ବର୍ଣ୍ଣନ
ହସ୍ତିନା ପୁର ସମ୍ରାଟ ବଜ୍ରବାହୁ ରାଜା,
ତାଙ୍କ ରାଜ୍ୟେ ରହି ଆମ୍ଭେ ମାରୁଅଛୁ ମଜା ।
ସମୁଦ୍ର ପରାୟେ ଅଟେ ତାହାଙ୍କ ଗର୍ଜନ
ମତ୍ତହସ୍ତୀ ପରି ରାଜା କରନ୍ତି ଗମନ ।
ଗୌରବର୍ଣ୍ଣ ଦୀର୍ଘକାନ୍ତି କିରୀଟି କୁଣ୍ଡଳ
ଚନ୍ଦ୍ରପରି ମୁଖ ଆହା ଭ୍ରମର ପରି ବାଳ ।
ଲାଞ୍ଚମିଛ ଦଗାବାଜି ଚୋରି ଜୁଆଚୋରି
ବନ୍ୟା, ବାତ୍ୟା, ମରୁଡ଼ି, ବସନ୍ତ, ମହାମାରି

ଏ ସମସ୍ତ ଭରପୂର ହସ୍ତିନା ନଗରେ
ଏ ରାଜ୍ୟଠୁ ଭଲ ରାଜ୍ୟ ଅଛି କେଉଁଠାରେ ?
ରାମ ଯେ ରାମ.....
ଏ ସମୟେ ଶାସନର ପଚିଶ ବରଷ
ପୂରଣ ହୋଇଲା ଆମ୍ଭେ ହୋଇଲୁ ହରଷ
ରଜତ ଜୟନ୍ତୀ ଆସି ଉପସ୍ଥିତ ହେଲା
ଗ୍ରାମେ ଗ୍ରାମେ ନଗ୍ରେ ନଗ୍ରେ ତୋପ ଫୁଟା ହେଲା
ବସନ୍ତ ମଳୟ ବହେ ହୋଇ ମନ୍ଦ ମନ୍ଦ
ଖିଅର ହେବାକୁ ରାଜା କରିଲେ ପସନ୍ଦ
ସେଥିପାଇଁ ଏ ଉତ୍ସବ ହେଲା ଆୟୋଜନ
''କ୍ଷୌରୋତ୍ସବ'' ବୋଲି ଯାର ଦିଆଯିବ ନାମ ।
ରାମ ଯେ ଜୟ ରାମ....

ବିଦୂଷକ ନଂ ଏକ ।। ତା'ହେଲେ ଏହା ସମ୍ରାଟ ବଜ୍ରବାହୁଙ୍କ କ୍ଷୌରୋତ୍ସବ ।

ବିଦୂଷକ ନଂ ଦୁଇ ।। ସମ୍ରାଟଙ୍କ ପ୍ରମୋଦଶାଳାରେ ବର୍ଷସାରା ଏମିତି ଉତ୍ସବ ଲାଗି ରହିବ ।

ବିଦୂଷକ ନଂ ଏକ ।। ରଜତ ଜୟନ୍ତୀ ବର୍ଷରେ ହସ୍ତିନା ନଗ୍ର ଖାଲି ଉତ୍ସବମୟ ହେବ ।

ବିଦୂଷକ ନଂ ଦୁଇ ।। କ'ଣ ବୋଲି ଭାବିଲକି ? ସମ୍ରାଟ ବଜ୍ରବାହୁଙ୍କ ଇଚ୍ଛାଟି !

ବିଦୂଷକ ନଂ ଏକ ।। ଥରେ ଆମ୍ଭ ଗ୍ରାମରେ ରଜତ ଜୟନ୍ତୀ ଉତ୍ସବ ହୋଇଥିଲା । ବୁଝିଲ ବିଦୂଷକ ଭାଇ, ସେଦିନ ଖାଲି...

ବିଦୂଷକ ନଂ ଦୁଇ ।। ତମ ଗ୍ରାମରେ ରଜତ ଉତ୍ସବ ! ନାଃ, ଆଉ କିଛି ହୋଇଥିବ ।

ବିଦୂଷକ ନଂ ଏକ ।। ନା, ଆଉ କିଛି ନୁହେଁ, 'ରଜତ ଜୟନ୍ତୀ' ଲେଖାଥିବା ବାନା ଉଡୁଥିଲା ।

ବିଦୂଷକ ନଂ ଦୁଇ ।। କିନ୍ତୁ.....

ବିଦୂଷକ ନଂ ଏକ ।। କିନ୍ତୁ, ଫିନ୍ତୁ ଗୋଟାଏ କ'ଣ ? ତୁମ୍ଭେ କ'ଣ ଭାବୁଅଛ ଆମ୍ଭେ ମିଥ୍ୟା କହୁଅଛୁ ?

ବିଦୂଷକ ନଂ ଦୁଇ ।। ନା ଯେ—ହଉ କୁହ ।
ବିଦୂଷକ ନଂ ଏକ ।। ଖାଲି ପାହାଡ଼ ପାହାଡ଼ ରସଗୋଲା ଗଦା ହୋଇଥିଲା ।
ବିଦୂଷକ ନଂ ଦୁଇ ।। ତା'ହେଲେ ସେ ପାହାଡ଼ ତ ତରଳି ଭୁଶୁଡ଼ି ପଡ଼ିଥିବ ?
ବିଦୂଷକ ନଂ ଏକ ।। ଆଉ ସାଜସଜ୍ଜା କଥା କ'ଣ କହିବି ସଖା ! "ଫଳେ ପୁଷ୍ପେଭରା ଶସ୍ୟଶ୍ୟାମଳା...."
ବିଦୂଷକ ନଂ ଦୁଇ ।। ଘୋଷି ପକେଇଛ । ଏ ପଦଟା କଉ ଗୀତ ଫୀତରୁ ଘୋଷି ପକେଇଛ ।
ବିଦୂଷକ ନଂ ଏକ ।। ଛାଡ଼ (ରାଗିଯାଇ) ତମ ସାଙ୍ଗରେ କି କଥାଭାଷା !
ବିଦୂଷକ ନଂ ଦୁଇ ।। ଆଚ୍ଛା ସଖା ! ରାଜାଙ୍କର ଦେଖା ନାହିଁ ଯେ ?
ବିଦୂଷକ ନଂ ଏକ ।। ରାଜା ପରା ରାଜବାଟୀ ପରିକ୍ରମା କରି ଆସିବେ !
ବିଦୂଷକ ନଂ ଦୁଇ ।। ଓହୋ....
ବିଦୂଷକ ନଂ ଏକ ।। ଏଇତ ଆସିଗଲେଣି
ବିଦୂଷକ ନଂ ଦୁଇ ।। ଆହା, ହା—କି ଚାଲି, କି ଠାଣି, କି ଛଟା ।
ବିଦୂଷକ ନଂ ଏକ ।। କି କୁଣ୍ଡଳ, କି ବସ୍ତ୍ର, କି ବାହାନ !
(ଏତିକିବେଳେ ରାଜା ଗୋଟିଏ କୁକୁର ଦ୍ୱାରା ଟଣା ଯାଉଥିବା ଗାଡ଼ିରେ ବସି ମଞ୍ଚ ଉପରକୁ ଆସିବେ)
ବାରିକ ।। ଛାମୁ, ଅଶ୍ୱ ଛାଡ଼ି ଏ ଶ୍ୱାନ ?
ବଜ୍ରବାହୁ ।। ଆମ୍ଭେ ପ୍ରଜାବତ୍ସଳ ରାଜା । ତେଣୁ ଅଶ୍ୱ ଛାଡ଼ି ଶ୍ୱାନ ବ୍ୟବହାର କରୁଅଛୁ ।
ବାରିକ ।। ଜୟ ରାଜା ବଜ୍ରବାହୁଙ୍କର ଜୟ ହେଉ ।
ବିଦୂଷକ ନଂ ଏକ ।। ଜୟ ରାଜା ମହାମହୋପାଧ୍ୟାୟ ବୁଦ୍ଧି, ଜ୍ଞାନ, ଲାବଣ୍ୟ ପରିପୂର୍ଣ୍ଣ, ତ୍ରିଭଙ୍ଗୀଠାମ, ସତ୍ୟଶ୍ରୀ ନ୍ୟାୟ ସିନ୍ଧୁ, ଶ୍ରୀ ଶ୍ରୀ ଶ୍ରୀ ୧୦୮ ଶ୍ରୀ ବଜ୍ରବାହୁଙ୍କର ଜୟ ହେଉ ।
ବିଦୂଷକ ନଂ ଦୁଇ ।। ଜୟ ରାଜାଧିରାଜ ବୀରପ୍ରତାପୀ ପରାକ୍ରମୀ, କୋଟି ବର୍ଗେଶ୍ୱର, ଭାରତେଧୀଶ୍ୱର, ହସ୍ତିନାପୁରେଶ୍ୱର ଶ୍ରୀ ଶ୍ରୀ ବଜ୍ରବାହୁଙ୍କର ଜୟ ହେଉ ।
ବଜ୍ରବାହୁ ।। ହେଃ, ହେଃ, ହେଃ— ବିଦୂଷକ ଦ୍ୱୟ ତୁମ୍ଭ କାର୍ଯ୍ୟରେ ସମ୍ରାଟ ବଜ୍ରବାହୁ ଭୀଷଣ ପ୍ରୀତ ହୋଇଛନ୍ତି ।
ବିଦୂଷକ ନଂ ଦୁଇ ।। ଆଜି ସମ୍ରାଟଙ୍କର ପ୍ରୀତହେବା ଦିନ ଅଟଇ । ଆଜି ଛାମୁଙ୍କର କ୍ଷୌରୋତ୍ସବ ।

ବିଦୂଷକ ନଂ ଏକ ।। ବାରିକ ମହାଶୟ ! ଉତ୍ସବ ଆରମ୍ଭ ହେବା ପାଇଁ ଆଉ କେତେ ସମୟ ଲାଗିବ ?

ବାରିକ ।। (ଏପର୍ଯ୍ୟନ୍ତ ସେ ଏକ ବିରାଟ ଚମଡ଼ାରେ କ୍ଷୌର ଘର୍ଷଣ କରୁଥିଲା)
ସମ୍ରାଟଙ୍କ କ୍ଷୌରୋତ୍ସବ ତମ ଗ୍ରାମର ରସଗୋଲା ଉତ୍ସବ ନୁହେଁ ।

ବିଦୂଷକ ନଂ ଏକ ।। ତେବେ ?

ବାରିକ ।। ଏଥି ନିମନ୍ତେ ମାହେନ୍ଦ୍ରବେଳା ଆବଶ୍ୟକ ।

ବିଦୂଷକ ନଂ ଏକ ।। ସେ ଯେତେ ସମୟରେ ହେଉନା କାହିଁକି, ଏ ଉତ୍ସବ ମହାସମାରୋହରେ ପାଳିତ ହେବା ଉଚିତ ।

ବିଦୂଷକ ନଂ ଦୁଇ ।। ହେବା ଉଚିତ ନୁହେଁ । ହେବା ପାଇଁ ବାଧ୍ୟ ।

ବଜ୍ରବାହୁ ।। ବାରିକ ଉତ୍ତମରୂପେ କ୍ଷୌରକ୍ରିୟା ସମ୍ପାଦନ କରିବ ।

ବାରିକ ।। ପ୍ରଭୁ, କର୍ତ୍ତବ୍ୟରେ ତ୍ରୁଟିଥିଲେ, ହସ୍ତିନାର ନରବିଷ୍ଣୁଙ୍କର ଦାଢ଼ି କ୍ଷୌର କରିବାର ସୌଭାଗ୍ୟ କ'ଣ ଏ ଅକିଞ୍ଚନର ଆସନ୍ତା ?

ବଜ୍ରବାହୁ ।। କର୍ତ୍ତବ୍ୟରେ ସାମାନ୍ୟ ତ୍ରୁଟି କଲେ ତୁମେ ଶୂଳି ପାଇବ ।

ବାରିକ ।। ଛାମୁ ଯାହା କହୁଛନ୍ତି ସତ୍ୟ ।

ବିଦୂଷକ ନଂ ଏକ ।। ସତ୍ୟ ହୋଇ ନ ଥିଲେ ମଧ ତାହାକୁ ସତ୍ୟ ବୋଲି ମାନିନେବାକୁ ହେବ ।

ବଜ୍ରବାହୁ ।। ଆମ୍ଭେ ଇଚ୍ଛାକଲେ ହସ୍ତିନା ନଗ୍ରରେ ଏକ ରସଗୋଲାର ପାହାଡ଼ ସୃଷ୍ଟି କରିଦେଇ ପାରିବୁ ।

ବିଦୂଷକ ନଂ ଏକ ।। ଯଥାଶୀଘ୍ର ମଣିମାଙ୍କର ସେ ଇଚ୍ଛା ହେଉ ।

ବଜ୍ରବାହୁ ।। ନଦନଦୀ ସବୁ ସୋମରସ ଦେଇ ପ୍ରବାହିତ ହେବେ ।

ବିଦୂଷକ ନଂ ଦୁଇ ।। ସାଧୁ-ସାଧୁ, କି ଇଚ୍ଛା ମଣିମାଙ୍କର ଦେଖ ତ ବିଦୂଷକ ଭାଇ !

ବିଦୂଷକ ନଂ ଏକ ।। ସେ କ'ଣ ଏପରି ସେପରି ଇଚ୍ଛା ହୋଇଅଛି ? ତାହା ସମ୍ରାଟ ବଜ୍ରବାହୁଙ୍କର ଇଚ୍ଛା ।

ବଜ୍ରବାହୁ ।। ଆମ୍ଭେ ଯେହେତୁ ପ୍ରଜାବତ୍ସଳ ରାଜା, ଏହିପରି ଇଚ୍ଛା ହେବା ସ୍ୱାଭାବିକ ଅଟେ ।

ବାରିକ ।। ପ୍ରତିଦିନ ଛାମୁଙ୍କର ଏହି ଇଚ୍ଛା ହେଉଥିଲେ ପ୍ରଜାମାନଙ୍କର କିଛି ଅସୁବିଧା ହୁଅନ୍ତା ନାହିଁ ।

ବଜ୍ରବାହୁ ।। ବାରିକ !

ବାରିକ ।। ମଣିମା !

ବଜ୍ରବାହୁ ।। ଯଥାଶୀଘ୍ର କ୍ଷୌରକାର୍ଯ୍ୟ ଆରମ୍ଭ କରାଯାଉ ।

ବାରିକ ।। ଆଉ ସାତ ଲିତା ବାକି ଅଛି ଛାମୁ !

ବଜ୍ରବାହୁ ।। ସୁଶୀତଳ ସୁଗନ୍ଧ ଜଳରେ ମୁଖ ପ୍ରକ୍ଷାଳନ କର ।

ବାରିକ ।। ଗାନ୍ଧାର ଦେଶରୁ ଏ ସୁଗନ୍ଧ ଜଳ ଆସିଅଛି ଛାମୁ !

ବିଦୂଷକ ନଂ ଏକ ।। କାହିଁ ଦେଖି ? ଆମ୍ଭେ ଯତ୍‌କିଞ୍ଚିତ ଆଘ୍ରାଣ କରି ଦେଖିବୁ !

ବାରିକ ।। (ଆଖି ଦେଖାଇ) ହଁ । ପ୍ରଥମେ ଛାମୁଙ୍କର ମୁଖ ପ୍ରକ୍ଷାଳନ ହେବ ।

ବଜ୍ରବାହୁ ।। ବିଦୂଷକ ଯଦି ସୁଗନ୍ଧ ଜଳ ଆଘ୍ରାଣ କରିବାକୁ ଚାହୁଁଛନ୍ତି ତେବେ ତାଙ୍କୁ ସେ ସୁଯୋଗ ଦିଆଯାଉ, ଏହା ଆମ୍ଭେ ଆଦେଶ କଲୁ ।

ବିଦୂଷକ ନଂ ଏକ ।। (ଆଘ୍ରାଣ କରି) ଆଃ..... ଆହା ହା । କି ଗନ୍ଧ, କି ବାସ୍ନା ସତେ ଯେପରି ହାସ୍ନା ହେନା !

ବିଦୂଷକ ନଂ ଦୁଇ ।। ଛାମୁଙ୍କ ବିନା, ସୁଗନ୍ଧ ଜଳ ବ୍ୟବହାର କରିବା ପାଇଁ କାହାର ସାମର୍ଥ୍ୟ ଅଛି ?

ବାରିକ ।। ଛାମୁ ଗୋଟାଏ ଦୋଷ ହୋଇ ଯାଇଅଛି । କ୍ଷମା କରନ୍ତୁ ।

ବଜ୍ରବାହୁ ।। ନିଃସଙ୍କୋଚରେ ପ୍ରକାଶ କର ।

ବାରିକ ।। ଏହି ସୁଗନ୍ଧ ଜଳ ରଖିବା ପାଇଁ ସୁବର୍ଣ୍ଣ ପାତ୍ରଟି ଭୁଲିଯାଇ ଅଛି ।

ବଜ୍ରବାହୁ ।। ଆମ୍ଭେ ପ୍ରଜାବତ୍ସଳ ରାଜା । ସମାଜବାଦରେ ବିଶ୍ୱାସ କରୁ ।

ବାରିକ ।। ଅବଶ୍ୟ ଛାମୁଙ୍କର ଏହା ମହାନୁଭବତା ।

ବଜ୍ରବାହୁ ।। ଆମ୍ଭ ଦେଶରେ ପ୍ରଜାମାନେ ଖାଦ୍ୟଦ୍ରବ୍ୟ ପାଉନାହାନ୍ତି ବୋଲି ଶୁଣିଛ ବାରିକ ? ଭେକ୍ଟି ସଂକଟ, ସନ୍ଦେଶ ସଂକଟ ସହିତ ବନ୍ୟା, ବାତ୍ୟା ଓ ମରୁଡ଼ି ପଡ଼ିଅଛି । ସେଥିପାଇଁ ଆମ୍ଭେ ସମାଜବାଦ ଚାହୁଁ ଅଛୁଁ ।

ବାରିକ ।। ପ୍ରଭୁ ! ସମାଜବାଦ କ'ଣ ?

ବଜ୍ରବାହୁ ।। ତାହା ମନ୍ତ୍ରୀ ବ୍ରହ୍ମଦତ୍ତଙ୍କୁ ପୁଛାକର । ସେ ଏହି ଶବ୍ଦଟାକୁ ଗଢ଼ିଛନ୍ତି । ତେବେ ଆମ୍ଭେ ସାଧାରଣ ଅର୍ଥରେ ଯାହା ବୁଝୁଅଛୁ, ସମାଜବାଦ ସମସ୍ତଙ୍କର ମଙ୍ଗଳର ଏକ ଉପାୟ ।

ବିଦୂଷକ ନଂ ଏକ ।। କି କଥାହେ, ଛାମୁ ଯଦି ସମାଜବାଦ ନ କରିବେ ଆଉ ତମେ ଆମେ କରିବା ?

ବିଦୂଷକ ନଂ ଦୁଇ ।। ଏ ମହୀମଣ୍ଡଳରେ କିଏ ସେ କଥା କରି ନ ଥିଲା ।

ବକ୍ରବାହୁ ।। କିନ୍ତୁ ଆମ୍ଭେ ତାହା ଏଣିକି କରିବୁ । ଆମ୍ଭେ ଆଜିଠାରୁ ସମାଜବାଦ କରିବୁ । ସମାଜବାଦ ଏକ ଭଲ ଦ୍ରବ୍ୟ । ଆମ୍ଭେ ଏଥି ଉତ୍ତାରୁ ସୁବର୍ଣ୍ଣ ପାତ୍ରରେ କ୍ଷୌର ହେବୁ ନାହିଁ । ପିତ୍ତଳ ପାତ୍ରରେ କ୍ଷୌର ହେବୁ ।

ବାରିକ ।। ଯଥା ଆଜ୍ଞା ଛାମୁ ।

ବକ୍ରବାହୁ ।। କ୍ଷୌର କାର୍ଯ୍ୟ ଆରମ୍ଭ କର ।

ବାରିକ ।। (ସୁଗନ୍ଧ ଜଳ ଲଗାଉ ଲଗାଉ) ଆହା ହା କି ଦାଢ଼ି !

ବିଦୂଷକ ନଂ ଏକ ।। ଆହା ହାଁ, ସେ କଥା ଆଉ ପଚାରୁଛ ବାରିକ ମହାଶୟ !

ବିଦୂଷକ ନଂ ଦୁଇ ।। ଏହା ଏପରି ସେପରି ଦାଢ଼ି ନୁହେଁ ବିଦୂଷକ । ଏହା ସମ୍ରାଟ ବକ୍ରବାହୁଙ୍କର ଦାଢ଼ି ।

ବାରିକ ।। ଆହା ହା, କି କୋମଳ,

ବିଦୂଷକ ନଂ ଏକ ।। ଆହା ହା କି ମସୃଣ ।

ବିଦୂଷକ ନଂ ଦୁଇ ।। ଆହା ହା କି ଚିକ୍କଣ ।

ବାରିକ ।। ମନେ ହେଉଛି ଯେପରି ଗାନ୍ଧାର ଦେଶର ରେଶମ ।

ବିଦୂଷକ ନଂ ଏକ ।। ମୟୂରଚନ୍ଦ୍ରିକା ପରି ଦୁଇଟି ନିଶ ।

ବାରିକ ।। ଦେଖତ, କି ଅଦ୍ଭୁତ କୃଷ୍ଣବର୍ଣ୍ଣ ସତେ !

ବିଦୂଷକ ନଂ ଦୁଇ ।। ଏହା ପୌରୁଷର ଲକ୍ଷଣ ।

ବାରିକ ।। ଆହା ହା । ଏଇ ରେଶମ ଭଳି ଦାଢ଼ିରେ ସୁଗନ୍ଧ ଜଳ ଲାଗିଲେ କି ଅଦ୍ଭୁତ ଦେଖାଯାଉଅଛି ଦେଖିଲେ ଭାଇମାନେ !

ବିଦୂଷକ ନଂ ଦୁଇ ।। ଆହା ହା, ଅତୁଳନୀୟ । ଅଦ୍ଭୁତ ।

ବିଦୂଷକ ନଂ ଏକ ।। ବାରିକ ମହାଶୟ । ମଣିମାଙ୍କର ଦାଢ଼ି କର୍ତ୍ତନ ପରେ ମତେ ସେଥିରୁ ମୁଠାଏ ଖଣ୍ଡେ ଦେବ ।

ବିଦୂଷକ ନଂ ଦୁଇ ।। ମୋ ପାଇଁ ମଧ୍ୟ ସେଥିରୁ ଛୋଟପୁଡ଼ିଆଟିଏ ବାନ୍ଧି ଦେଇଥିବ ।

ବାରିକ ।। ଏ ସବୁ ଅତି ମହାର୍ଘ ଦ୍ରବ୍ୟ ।

ବିଦୂଷକ ନଂ ଏକ ।। ଆମ୍ଭର ସୌଭାଗ୍ୟ ଏହିପରି ଜଣେ ସମ୍ରାଟଙ୍କ କ୍ଷୌରୋତ୍ସବ ଆମ୍ଭେ ଦେଖିପାରିଲୁ ।

ବିଦୂଷକ ନଂ ଦୁଇ ।। ଏବଂ ଦାଢ଼ି ସଂଗ୍ରହର ଅନୁମତି ପାଇଲୁ ।

ବାରିକ ।। ଛାମୁଙ୍କର ମୁହଁ ଯେପରି ନିର୍ମଳ । ମନ ମଧ୍ୟ ସେହିପରି ।
ବକ୍ରବାହୁ ।। ଆମ୍ଭେ ସେଥିପାଇଁ ନରବିଷ୍ଣୁ ।
ବାରିକ ।। ମଣିମା ଏଣିକି ଭଣ୍ଡାରଘରେ ଆପଣଙ୍କ ଦାଢ଼ି, କେଶ, ନଖ, ରଖାଯାଉ ।
ବକ୍ରବାହୁ ।। ଅବଶ୍ୟ ! କିନ୍ତୁ ଆମ୍ଭର ଦାଢ଼ି, କେଶ ଏବଂ ନଖ ଭଣ୍ଡାର ଘରେ ରହି କ'ଣ ହେବ ?
ବାରିକ ।। ହସ୍ତିନା ନଗର ପ୍ରଜାମାନେ ଦାଢ଼ି, କେଶ ଏବଂ ନଖ ପୂଜା କରିବେ ।
ବିଦୂଷକ ନଂ ଏକ ।। ଧନ୍ୟ ହୋଇଯିବେ ।
ବିଦୂଷକ ନଂ ଦୁଇ ।। ପବିତ୍ର ହୋଇଯିବେ ।
ବକ୍ରବାହୁ ।। ଏମନ୍ତ ଗଭୀର କଥା ଏହା ଭିତରେ ନିହିତ ଅଛି ?
ବାରିକ ।। ଛାମୁ !
ବକ୍ରବାହୁ ।। ତା ହେଲେ ଏକଥା ଧେଣ୍ଟୁରାପିଟି ମୋ ସାମ୍ରାଜ୍ୟରେ ରାଷ୍ଟ୍ର କରାଯାଉ ।
ବାରିକ ।। କରାଯାଉ ଛାମୁ !
ବକ୍ରବାହୁ ।। ବାରିକ !
ବାରିକ ।। ଆଜ୍ଞା କରନ୍ତୁ ଛାମୁ !
ବକ୍ରବାହୁ ।। ଆମ୍ଭର ରାଜ୍ୟରେ ପ୍ରଜାକୁଳ ସୁଖରେ କାଳାତିପାତ କରୁଛନ୍ତି ବୋଲି ତୁମ୍ଭର ଧାରଣା ଜନ୍ମୁଅଛି ?
ବାରିକ ।। ମହା ସୁଖରେ ଅଛନ୍ତି ଛାମୁ !
ବକ୍ରବାହୁ ।। କିନ୍ତୁ ଆମ୍ଭ ସମୀପରେ ଅନେକ ଦୁଃସମ୍ବାଦ ପହଞ୍ଚିଯାଇଥିବାରୁ ଆମ୍ଭ ମନ ଅତ୍ୟନ୍ତ ଦୁଃଖିତ ।
ବାରିକ ।। ପ୍ରଥମ କଥା ହେଲା ଏ ରାଜ୍ୟରେ ଯେଉଁ ଭୀଷଣ ହାରରେ ପିଲାଛୁଆ ଜନ୍ମ ହେଉଛନ୍ତି, ଲୋକଙ୍କୁ ଯେତେ ଖାଇବାକୁ ଦେଲେ ବି ନିଅଣ୍ଟ ହେଉଛି ।
ବକ୍ରବାହୁ ।। (ଉଠିଯାଇ) କ'ଣ କହିଲ ? ସନ୍ତାନ ? ହସ୍ତିନାନଗ୍ରରେ ଏ ଯାବତ୍ ସନ୍ତାନ୍ ଉତ୍ପାଦନ ବନ୍ଦ ହୋଇ ନାହିଁ ? ଏହା କେମନ୍ତେ ସମ୍ଭବ ହେଲା ? ଆମ୍ଭେ ପ୍ରାୟ ଦଶବର୍ଷ ହେଲା ଏହି ଆଦେଶ ଲାଗୁ କରିଅଛୁ—ଯେଉଁ ପ୍ରଜା ଗୃହରେ ସନ୍ତାନ ଜନ୍ମ ହେବ ତାକୁ ଶୂଳି ଦିଆଯିବ ।

ବାରିକ ।। ଛାମୁ, ମଣିମା, ପ୍ରଭୁ, କୋପ କରନ୍ତୁ ନାହିଁ ।

ବଜ୍ରବାହୁ ।। ସନ୍ତାନ ଜନ୍ମ କରୁଥିବା ପୁରୁଷ ଓ ରମଣୀମାନଙ୍କୁ ଶୂଳି ଦିଅ ।

ବାରିକ ।। ପ୍ରଜାମାନଙ୍କର ଭୁଲ ହେଇ ଯାଇଥିବ ପ୍ରଭୁ କ୍ଷମା ସାଗର ମଣିମା, ଆପଣଙ୍କ ଭଣ୍ଡାରରୁ କିଛି କ୍ଷମା ବଣ୍ଟନ କରନ୍ତୁ ।

ବଜ୍ରବାହୁ ।। ତାହା ଆମ୍ଭେ କରିବା ପାଇଁ ପ୍ରସ୍ତୁତ, କିନ୍ତୁ ପ୍ରଜାଗଣ କାହିଁକି ଆମ୍ଭ ଆଦେଶକୁ ଅମାନ୍ୟ କଲେ ?

ବାରିକ ।। ଅମାନ୍ୟ କରି ଜାଣି ଜାଣି ସନ୍ତାନ ଉତ୍ପାଦନ କରିନାହାନ୍ତି ଛାମୁ । ଅଜାଣତରେ ହଉ ହଉ ହୋଇଯାଇଥିବ ।

ବଜ୍ରବାହୁ ।। ତା ହେଲେ ଏହି ଅନାହାର ମୃତ୍ୟୁ ପାଇଁ ଆମ୍ଭେ ଆଦୌ ଦୁଃଖ ପ୍ରକାଶ କରିବୁ ନାହିଁ ।

ବିଦୂଷକ ନଂ ଏକ ।। ତିଳେ ମାତ୍ର ନୁହେଁ । ଏମାନେ ରାଜଦ୍ରୋହୀ ପ୍ରଜା ।

ବଜ୍ରବାହୁ ।। ବାରିକ ! ତୁମେ ଏହି ସମ୍ବାଦ ପ୍ରଦାନ କରିଥିବା ଶୁଣି ଆମ୍ଭେ ପ୍ରୀତ ହେଲୁ । ପ୍ରୀତ ହୋଇ ଏହି ସ୍ୱର୍ଣ୍ଣ ମୁଦ୍ରିକା ଉପହାର ଦେଲୁ ।

ବାରିକ ।। ମଣିମାଙ୍କର ଜୟ ହେଉ, ଜୟ ବିରାଧୀବୀରବର ସୁନ୍ଦର ନଖଦାଢ଼ି କେଶ ପରିପୂର୍ଣ୍ଣ ଭାବଗ୍ରାହୀ ଗୁଣଗ୍ରାହୀ ସତ୍ୟାଗ୍ରହୀ ଓ ପ୍ରଜାବତ୍ସଳ ସମ୍ରାଟ ବଜ୍ରବାହୁଙ୍କର ଜୟ ହେଉ ।

ବିଦୂଷକ ନଂ ଏକ ।। ଜୟ ରାଜା ମହାମହୋପାଧ୍ୟାୟ ବୁଦ୍ଧି ଜ୍ଞାନ ଲାବଣ୍ୟ ପରିପୂର୍ଣ୍ଣ ତ୍ରିଭଙ୍ଗୀ ଠାମ ସତ୍ୟଶ୍ରୀ ନ୍ୟାୟ ସିନ୍ଧୁ ଶ୍ରୀ ଶ୍ରୀ ଶ୍ରୀ ୧୦୮ ଶ୍ରୀ ବଜ୍ରବାହୁଙ୍କର ଜୟ ହେଉ ।

ବିଦୂଷକ ନଂ ଦୁଇ ।। ଜୟ ରାଜାଧିରାଜ ବୀର ପ୍ରତାପୀ ପରାକ୍ରମୀ କୋଟି ବର୍ଗେଶ୍ୱର ଭାରତେଶ୍ୱର ହସ୍ତିନାପୁରେଶ୍ୱର ଶ୍ରୀ ଶ୍ରୀ ଶ୍ରୀ ବଜ୍ରବାହୁଙ୍କର ଜୟ ହେଉ ।

ବଜ୍ରବାହୁ ।। ରାଜ୍ୟର ଅନ୍ୟ ଗୁପ୍ତ ସମ୍ବାଦ ପ୍ରକାଶ କର ।

ବାରିକ ।। ପ୍ରଭୁ ! ଆପଣଙ୍କ ଅମାତ୍ୟଗଣ ଅଧିକ ସୋମରସ ପାନ କରି ଭଣ୍ଡାର ଘର ଶୂନ୍ୟ କରି ଦେଲେଣି ।

ବଜ୍ରବାହୁ ।। କହିଚାଲ ।

ବାରିକ ।। ରାଜ୍ୟର ଅମାତ୍ୟ ହୋଇ ଏତେ ପରିମାଣରେ ସୋମରସ ପାନ କରିବା କଅଣ ଆବଶ୍ୟକ ମଣିମା ? ଏତଦ୍ୱାରା

ସେମାନଙ୍କର ଅର୍ଥାଭାବ ହେଲେ ପ୍ରଜାଙ୍କଠାରୁ ଉତ୍କୋଚ ଗ୍ରହଣ କରିପାରନ୍ତି ।

ବଜ୍ରବାହୁ ॥ ଆମ୍ଭର ଅମାତ୍ୟଗଣ ଏତେ ନୀଚ ନୁହନ୍ତି !

ବାରିକ ॥ କିନ୍ତୁ ଆପଣଙ୍କ ପଛରେ ଆପଣଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଅଛନ୍ତି ।

ବଜ୍ରବାହୁ ॥ ତାହା ତ ହସ୍ତିନାପୁରବାସୀଙ୍କର ଏକମାତ୍ର ଲକ୍ଷଣ ।

ବାରିକ ॥ ତାହାଦ୍ୱାରା ଆପଣଙ୍କ ରାଜ୍ୟରେ ପ୍ରଜା ଆନ୍ଦୋଳନ ଘଟିପାରେ ଏବଂ ଛାମୁଙ୍କର ସୁଖ ନିଦ୍ରାରେ ବ୍ୟାଘାତ ଘଟିପାରେ ।

ବଜ୍ରବାହୁ ॥ ହୁଁ—ଏହା ତାହାଲେ ଏକ ଗମ୍ଭୀର ସମସ୍ୟା ।

ବିଦୂଷକ ନଂ ଏକ ॥ ପ୍ରଜାଆନ୍ଦୋଳନର ଆଶଙ୍କା ଦେଖି ମୁଁ ଭୟଭୀତ ହୋଇ ପଡ଼ିଲିଣି ।

ବିଦୂଷକ ନଂ ଦୁଇ ॥ ପ୍ରଜା ବିକ୍ଷୋଭ ହେଲେ ମୋର ପ୍ରାଣବାୟୁଟି ଲୋଟଣୀ ପାରା ପରି ଉଡ଼ିଯିବ ।

ବଜ୍ରବାହୁ ॥ ଭୟର କୌଣସି କାରଣ ନାହିଁ । ଆମ୍ଭେ ଏହାର ବିହିତ ପ୍ରତିକାର କରିବୁ । ରାତି ଅର୍ଦ୍ଧେକ ହୋଇଗଲେ, ଆମ୍ଭେ ପ୍ରବଳ ପରାକ୍ରମୀ ସମ୍ରାଟ ବଜ୍ରବାହୁ ନାରୀବେଶ ଧାରଣ କରି ହସ୍ତିନା ନଗ୍ର ପରିକ୍ରମା କରିବୁ ।

ବାରିକ ॥ ଆଉ କୋଉ ବେଶ ଧାରଣ କରନ୍ତୁ ପଛେ ନାରୀବେଶ ଧାରଣ କରନ୍ତୁ ନାହିଁ ଛାମୁ ।

ବଜ୍ରବାହୁ ॥ କାହିଁ ପାଇଁ ?

ବାରିକ ॥ ହସ୍ତିନାପୁର ଯୁବକମାନେ ଅତି ଉଦଣ୍ଡ ହେଲେଣି ।

ବିଦୂଷକ ନଂ ଏକ ॥ ପ୍ରମତ୍ତ ଭୃଙ୍ଗଭଳି ପୁଷ୍ପରୁ ମଧୁପାନ କରୁଅଛନ୍ତି ।

ବିଦୂଷକ ନଂ ଦୁଇ ॥ ମାଂସଲୋଭୀ ଶୃଗାଳ ଶ୍ମଶାନରେ ଶବ ଖୋଜିଲା ଭଳି ଏମାନେ ମଧ୍ୟ .....

ବାରିକ ॥ ସେଥିପାଇଁ ମନା କରୁଥିଲି ପ୍ରଭୁ, ନାରୀ ବେଶ ଧାରଣ କଲେ ଆପଣଙ୍କ ଅବସ୍ଥା ଢିଲା ହୋଇଯାଇପାରେ ।

ବଜ୍ରବାହୁ ॥ ଆମ୍ଭେ ସେହି ବିଶୃଙ୍ଖଳ ଯୁବକମାନଙ୍କୁ ଉପଯୁକ୍ତ ଶାସ୍ତି ଦେବୁ । କିଏ ସେମାନେ ?

ବାରିକ ॥ ଥାଉ, ମଣିମା ! ସେ ସବୁ ନାମ ନ ଶୁଣିବା ବରଂ ଭଲ ।

ବଜ୍ରବାହୁ ॥ ଆମ୍ଭେ ସତ୍ୟ ଜାଣିବା ପାଇଁ ଆଗ୍ରହୀ ସମ୍ରାଟ ।

ବାରିକ ॥ ସେମାନେ ଜାଣିଲେ ମତେ ଛତୁ କରିଦେବେ ଛାମୁ !

ବଜ୍ରବାହୁ ॥ ପ୍ରକାଶ କର । ଆମ୍ଭେ ଅଭୟବାଣୀ ଦେଉଅଛୁ ।

ବାରିକ ॥ ଏଇ କଟୁଆଳପୁତ୍ର ଏବଂ ସେନାଧକ୍ଷଙ୍କ ଶାଳକ ।

ବଜ୍ରବାହୁ ॥ ଏମାନଙ୍କ ଏକମାତ୍ର ଅପରାଧ କ'ଣ ନାରୀ ଧର୍ଷଣ ?

ବାରିକ ॥ ଅତ୍ୟଧିକ ସୋମରସ ପାନ ମଧ ।

ବଜ୍ରବାହୁ ॥ ଏମାନଙ୍କ ଅତ୍ୟାଚାରର ଏକ ଦୃଷ୍ଟାନ୍ତ ଦେଇପାରିବ ?

ବାରିକ ॥ ମଣିମା ଗତ ରାତିରେ ଏଇ କଟୁଆଳ ପୁତ୍ର ଏବଂ ସେନାଧକ୍ଷଙ୍କ ଶାଳକ ଜଣେ ନାରୀକୁ ଚତୁଷ୍ପଦ ବିଶିଷ୍ଟ ଯାନରେ ନେଇ ଜଙ୍ଗଲ ଭିତରେ ଫୋପାଡ଼ି ଦେଲେ ।

ବଜ୍ରବାହୁ ॥ ଏ ସମ୍ବାଦ ସତ୍ୟ ?

ବାରିକ ॥ ଛାମୁ ! ଆପଣ ଯଥାଶୀଘ୍ର ରାତିରେ ରାଜକାର୍ଯ୍ୟ ଚଳାନ୍ତୁ ଏବଂ ଦିନରେ ସମସ୍ତଙ୍କୁ ବିଶ୍ରାମ ନେବା ପାଇଁ କୁହନ୍ତୁ । ତା ହେଲେ...

ବଜ୍ରବାହୁ ॥ ଆଜି ସେ ବିଷୟରେ ଭାବାଯାଉ ।

ବାରିକ ॥ ରାଣୀମା'ଙ୍କ ଖବର ତ ଆପଣ ଜାଣିଥିବେ ?

ବଜ୍ରବାହୁ ॥ ରାଣୀମା'ଙ୍କ ଖବର ?

ବାରିକ ॥ ହସ୍ତିନାପୁର ଦାଣ୍ଡଘାଟରେ ସମସ୍ତେ କହୁଛନ୍ତି ଅବନ୍ତୀ ନଗରର ଜଣେ ଫେରିବାଲାଠାରୁ ରାଣୀ ସ୍ୱପ୍ନ କିଣିଛନ୍ତି ।

ବଜ୍ରବାହୁ ॥ ସ୍ୱପ୍ନ (କିଛି ନ ବୁଝି) ସେ ଶାଢ଼ି ଅତି ସୁନ୍ଦର ତା'ହେଲେ ? କ'ଣ ବନାରସୀ ପରି ?

ବିଦୂଷକ ନଂ ଏକ ॥ ସୁନ୍ଦର ପରି ସୁନ୍ଦର ? ଠିକ୍ ମହାରାଣୀଙ୍କ ମନଲାଖି ।

ବିଦୂଷକ ନଂ ଦୁଇ ॥ ଅବନ୍ତୀ ଦେଶର ମାଲ ଯେତେବେଳେ ନିଶ୍ଚୟ ଭଲ ହୋଇଥିବ !

ବଜ୍ରବାହୁ ॥ ସେ ସମ୍ବନ୍ଧରେ ଆମର ଚନ୍ତା କରିବାର କିଛି ନାହିଁ । ଆଉ କିଛି ବିଶେଷ ସମ୍ବାଦ ଅଛି ?

ବିଦୂଷକ ନଂ ଏକ ॥ ଆମ୍ଭ ହସ୍ତିନାନଗ୍ର ଉପାନ୍ତକୁ ଜଣେ ବାବା ଆସିଛନ୍ତି । ଗୌରକାନ୍ତି । ମୁଣ୍ଡରେ ମୟୂରପୁଚ୍ଛ ଭଳି କେଶ । ଗୈରିକ ବସନ ।

ବିଦୂଷକ ନଂ ଦୁଇ ॥ ପେଟଟି ସାମାନ୍ୟ ଉଚ୍ଚ । ମୁହଁଟି ସାମାନ୍ୟ ମାଇଚିଆ ।

ବିଦୂଷକ ନଂ ଏକ ॥ ନିଜକୁ ଶ୍ରୀକୃଷ୍ଣଙ୍କ ଅବତାର ମନେ କରନ୍ତି ।

ବିଦୂଷକ ନଂ ଦୁଇ ॥ ସେ ସାକ୍ଷାତ୍ ପରଂବ୍ରହ୍ମ ।

ବିଦୂଷକ ନଂ ଏକ ।। ତାଙ୍କର ଆବିର୍ଭାବ ପରେ କେହି ଆଉ ବିଶ୍ୱେଶ୍ୱରଙ୍କୁ ପୂଜା କରୁନାହାନ୍ତି । କେହି ପ୍ରଭୁ ଜଗନ୍ନାଥଙ୍କୁ ମୁଣ୍ଡିଆ ମାରୁନାହାନ୍ତି ।

ବିଦୂଷକ ନଂ ଦୁଇ ।। ରମଣୀ ଭକ୍ତଗଣ ଅଷ୍ଟପ୍ରହରୀ ସଂକୀର୍ତ୍ତନ କରି ତାଙ୍କୁ ବେଢ଼ି ଅଛନ୍ତି ।

ବଜ୍ରବାହୁ ।। ବୁଝିଲୁ ! ଉକ୍ତ ବାବାଙ୍କ ମହିମା ସମ୍ପର୍କରେ କିଛି କୁହ ।

ବାରିକ ।। ମୁଁ ଶୁଣିଲି ତାଙ୍କର ପ୍ରତିମୂର୍ତ୍ତିରୁ ଅନବରତ ହଳଦି ଓ ଶର୍କରା ନିର୍ଗତ ହେଉଅଛି ।

ବିଦୂଷକ ନଂ ଏକ ।। ଖାଲି ସେତିକି ନୁହେଁ । ଇଚ୍ଛା କଲେ ବାବା ଘୃତାନ୍ନଠାରୁ ଆରମ୍ଭ କରି ଲଡ୍ଡୁ ପର୍ଯ୍ୟନ୍ତ ଶୂନ୍ୟରୁ ମଗାଇପାରନ୍ତି ।

ବିଦୂଷକ ନଂ ଦୁଇ ।। ଭେଣ୍ଡିଠାରୁ ଆରମ୍ଭ କରି ନାରୀକେଳ ପର୍ଯ୍ୟନ୍ତ । ଏପରିକି ସନ୍ତାନ ପର୍ଯ୍ୟନ୍ତ ଶୂନ୍ୟରୁ ଖସାଇ ଦେଇ ପାରନ୍ତି ।

ବିଦୂଷକ ନଂ ଏକ ।। ବାବା ଇଚ୍ଛା କଲେ ବନ୍ୟା ସୃଷ୍ଟି ହୁଏ । ବାବା ଇଚ୍ଛାକଲେ ବୃଷ୍ଟି ମଧ ବନ୍ଦ ହୁଏ ।

ବିଦୂଷକ ନଂ ଦୁଇ ।। ବାବା ଇଚ୍ଛା କଲେ ବନ୍ୟା ସୃଷ୍ଟି ହୁଏ, ବାବା ଇଚ୍ଛା କଲେ ବନ୍ୟା ନିୟନ୍ତ୍ରଣ ହୁଏ ।

ବଜ୍ରବାହୁ ।। ସେ ବାବା କ'ଣ ଆମ୍ଭଠାରୁ ପରାକ୍ରମୀ ?

ବାରିକ ।। କ'ଣ କହିଲେ ଛାମୁ ? (ଛେପ ଢୋକିଲା) ଆପଣଙ୍କଠୁ ? ହେଁ ସେ କିଏ, ଆପଣ କିଏ ? କି କଥା ଇଏ... ତା କେବେ ହୋଇପାରେ ମଣିମା ?

ବଜ୍ରବାହୁ ।। କିନ୍ତୁ ଏତେ କାର୍ଯ୍ୟ ଘଟାଉଅଛି କେଉଁପରି ?

ବାରିକ ।। ଭୋଜବିଦ୍ୟା କିମ୍ୱା ଗୁଣିବିଦ୍ୟା ହୋଇପାରେ ମଣିମା !

ବଜ୍ରବାହୁ ।। ତା'ହେଲେ ଏହି ସେହି ଦୁରାତ୍ମା ଯାହାର ପ୍ରଭାବରେ ଗୌଡ଼ ଦେଶର ରମଣୀମାନେ ମସ୍ୟ ହୋଇଗଲେ ?

ବିଦୂଷକ ନଂ ଏକ ।। ହୋଇପାରେ, ତାଙ୍କ ଯୋଗୁ କର୍ଣ୍ଣାଟଦେଶର ଜନତା ପରସ୍ପରର ହସ୍ତପଦ ଛେଦନ କରୁଅଛନ୍ତି ।

ବିଦୂଷକ ନଂ ଦୁଇ ।। ବାବାଙ୍କ ଧର୍ମରେ ପାଗଳ ହୋଇସାରିଲା ପରେ ପ୍ରଜାମାନେ ପରସ୍ପରର ହସ୍ତପଦ ଛେଦନ କରିବା ପ୍ରେରଣା ପାଇଥିବେ ।

ବାରିକ ।। ତା'ହେଲେ ପ୍ରଭୁ ! କଳିଙ୍ଗ ଦେଶର ବନ୍ୟାମରୁଡ଼ି କଅଣ ବାବା ଭିଆଇଛନ୍ତି ?

ବଜ୍ରବାହୁ ।। ଉପଦ୍ରବ ! ଘୋର ଉପଦ୍ରବ !!

ବାରିକ ।। ବାବାଜି ଉପଦ୍ରବ ।

ବଜ୍ରବାହୁ ।। ବାବାଜିଙ୍କୁ ଆମ୍ଭେ ଶୂଳିଦଣ୍ଡ ଦେବୁ । ଦିବା ଦ୍ୱିପ୍ରହରରେ ଉକ୍ତ ଭୋଜବିଦ୍ୟା ବାବାଜିଙ୍କୁ ଧରିଆଣି ସିଂହଦ୍ୱାର ଆଗରେ ଶୂଳିଦିଅ । ରାଜ ବାରିକ ! ତୁମ୍ଭେ ଯାଇ ଏହି କଥା ଦୂତକୁ ଜଣାଇ ଦିଅ ।

(ବାରିକ ଚାଲିଗଲା ପରେ ରାଜା ହସିଲେ । ବିଦୂଷକ ଦ୍ୱୟ ମଧ୍ୟ ହସିଲେ)

ବିଦୂଷକ ନଂ ଏକ ।। ମଣିମା ! ଏତେଦିନ ଆପଣଙ୍କ ରାଜପ୍ରାସାଦରେ ରହିଲୁ ! ଆମ୍ଭ କଥା ଟିକିଏ ବୁଝିଲେ ନାହିଁ ?

ବଜ୍ରବାହୁ ।। ତୁମ୍ଭେ ଯେ ଆମ୍ଭର ଅତି ପ୍ରିୟ !

ବିଦୂଷକ ନଂ ଏକ ।। ହଜୁର !

ବଜ୍ରବାହୁ ।। ସୁଖଦା ଗୁରୁକୁଳ ଆଶ୍ରମରେ ଉପକୁଳପତି ସ୍ଥାନଟିଏ ଖାଲି ଅଛି । କାର୍ଯ୍ୟଟି ଅତି ସମ୍ମାନସୂଚକ । ବିଶୃଙ୍ଖଳାର ପ୍ରଶ୍ନ ଉଠୁନାହିଁ । ଅବଶ୍ୟ ଆଜିକାଲି ଆଶ୍ରମରେ ନାବାଳକ ଆର୍ଯ୍ୟପୁତ୍ରମାନଙ୍କର ଗାଲରେ ନୂତନ ଶ୍ମଶ୍ରୁ ଗଜୁରି ଉଠୁଅଛି । ତେଣୁ ମାନସିକ ବିକୃତି ହେବାରୁ ମଝିରେ ମଝିରେ ଉପକୁଳପତିଙ୍କୁ ସେମାନେ ଅଶ୍ଳୀଳ ଭାଷାରେ ଗାଳି ଦିଅନ୍ତି ।

ବିଦୂଷକ ନଂ ଏକ ।। ଅଶ୍ଳୀଳ ଗାଳି ଶୁଣିବାରେ ମୋର ଅଭ୍ୟାସ ଅଛି ମଣିମା ! କିନ୍ତୁ ମଣିମା ସବୁ ସୁବିଧା କରାଇ ଦେଲେ... !

ବଜ୍ରବାହୁ ।। ଯଦି ଯାନବାହନ ଚାହୁଁଛ ଗୋଟିଏ ଖଚର ଦେଇପାରୁ । ତୁମେ ଆଶ୍ରମକୁ ଉତ୍ତମ ରୂପେ ପରିଚାଳନା କରିବ ।

ବିଦୂଷକ ନଂ ଏକ ।। ପ୍ରଭୁ ! ଆଚାର୍ଯ୍ୟମାନେ ସମସ୍ତେ ଇଟା ପଥର ବୋହି ଆକାଶଛାତ ନିର୍ମାଣ କରୁଅଛନ୍ତି । ସମସ୍ୟା ଆଦୌ ନଥିବ ।

ବଜ୍ରବାହୁ ।। ସମୟେ ସମୟେ ନୂତନ ଶ୍ମଶ୍ରୁ ଉଠୁଥିବା କଣ୍ଡୁଯୋଗୁଁ ଶିଷ୍ୟମାନେ ବୃଦ୍ଧ ଆଚାର୍ଯ୍ୟମାନଙ୍କର ଦାଢ଼ି ଉପାଡ଼ିବାର ଉଦାହରଣ ମିଳୁଛି । ସେହି କ୍ଷେତ୍ରରେ ତୁମ୍ଭେ ବୃଦ୍ଧ ଆଚାର୍ଯ୍ୟମାନଙ୍କୁ ସହନଶୀଳତା ଶିକ୍ଷା ଦେବ ।

ବିଦୂଷକ ନଂ ଏକ ।। ଯଥା ଆଜ୍ଞା ମଣିମା !

ବିଦୂଷକ ନଂ ଦୁଇ ।। ପ୍ରଭୁ ! ଟିକିଏ ମୋ କଥା...

ବଜ୍ରବାହୁ ।। ଆଚ୍ଛା, ଏ ଦେଶର ସାହିତ୍ୟ ଓ କଳାର ତତ୍ତ୍ୱାବଧାନ ପାଇଁ ଆମ୍ଭେ ଗୋଟିଏ ସମିତି ସ୍ଥାପନ କରିଅଛୁ । ତାହାର ସଂପାଦକ ହେବ ତୁମେ । ତୁମ୍ଭେ ଏ ହସ୍ତିନା ସାମ୍ରାଜ୍ୟର କଳା ଓ ସାହିତ୍ୟ ଜଗତରେ ହେବ ସମ୍ରାଟ ।

ବିଦୂଷକ ନଂ ଦୁଇ ।। ମଣିମାଙ୍କର ଇଚ୍ଛା ପୂର୍ଣ୍ଣ ହେଉ । ଅଧମ ତ ଛାମୁଙ୍କର କିଙ୍କର !

ବଜ୍ରବାହୁ ।। ତୁମ୍ଭ ବ୍ୟବହାରରେ ପ୍ରୀତ ହୋଇ ଆମ୍ଭେ ଏହି ସଂପାଦକ ଦାୟିତ୍ୱ ତୁଲାଇବା ପାଇଁ ଆଦେଶ ଦେଲୁ ।

ବିଦୂଷକ ନଂ ଦୁଇ ।। ମଣିମା ! ମାସିକ ଭତ୍ତାଟା....

ବଜ୍ରବାହୁ ।। ବହୁଦିନ ଧରି ଆମ୍ଭର ବିଶେଷ ବିଦୂଷକ କାର୍ଯ୍ୟ କରିଥିବା ହେତୁ ଆମ୍ଭେ ପ୍ରୀତ । ମାସିକ ପଞ୍ଚଶତ ସ୍ୱର୍ଣ୍ଣମୁଦ୍ରା ଏବଂ ଦ୍ୱି ଶକଟ ପୂର୍ଣ୍ଣ ବିଶୁଦ୍ଧ ସୂକ୍ଷ୍ମ ଧାନ୍ୟ ।

ବିଦୂଷକ ନଂ ଦୁଇ ।। ସମ୍ରାଟ ବଜ୍ରବାହୁଙ୍କର ଜୟ ହେଉ । କିନ୍ତୁ ଛାମୁ ! ଆମ୍ଭର କାର୍ଯ୍ୟକଳାପ ସଂପର୍କରେ ସମ୍ୟକ ଧାରଣା ଦେଲେ..

ବଜ୍ରବାହୁ ।। ହସ୍ତିନାପୁରର ସମସ୍ତ ପଣ୍ଡିତ କବିଙ୍କ ଦାୟିତ୍ୱ ଆପଣଙ୍କ ଉପରେ । ଅବଶ୍ୟ କବିମାନଙ୍କର ସାମାନ୍ୟ କପି ପ୍ରକୃତି ଥାଏ । ଅତି ସହଜରେ ସେମାନେ ଗୀତ ଗାଆନ୍ତି ଏବଂ ଅତି ସହଜରେ ସେମାନେ ଗାଳି ଦିଅନ୍ତି । ସେମାନଙ୍କୁ କିଛି କିଛି ମୁଦ୍ରା ପୁରସ୍କାର ସ୍ୱରୂପ ପ୍ରଦାନ କରି ସନ୍ତୁଷ୍ଟ କରି ରଖିବାକୁ ହୁଏ । ନଚେତ୍ ରାଜାଙ୍କର ବଦ୍‌ନାମ କରିବେ ।

ବିଦୂଷକ ନଂ ଦୁଇ ।। କିନ୍ତୁ ଦେଶରେ ପ୍ରତି ବର୍ଷ ଯେଉଁ ସାହିତ୍ୟ ଫଳୁଛି ତାହା ଉତ୍ତମ କି ଅଧମ ତାହା ଆମ୍ଭେ କେମନ୍ତେ ଜାଣିବୁ ? ଆମ୍ଭେ ଆପଣଙ୍କ ବିଦୂଷକ ଭାବେ ଦଶ ବର୍ଷ କାଳ ଜୀବନ ଯାପନ କଲାପରେ ସାହିତ୍ୟକୁ ପାସୋରି ଦେଇଅଛୁ ।

ବଜ୍ରବାହୁ ।। ସାହିତ୍ୟ ଏକ ମାୟା । ତାହା ଆମ୍ଭ ଭଳି ଜ୍ଞାନୀ ସମ୍ରାଟଙ୍କୁ ମଧ୍ୟ ଅଗୋଚର ।

ବିଦୂଷକ ନଂ ଦୁଇ ।। ମଣିମା, ପ୍ରତିବର୍ଷ ଯେଉଁ ପୁରସ୍କାର ଦେବା କଥା କହିଲେ, ତାହା ଅତି ଜଟିଳ ସମସ୍ୟା । କେଉଁ ସାହିତ୍ୟ ଭଲ କି ଭେଲ ତାହା ଆମ୍ଭେ କିପରି ବିଚାର କରିବୁ ?

ବଜ୍ରବାହୁ ।। ତୁମ୍ଭେ ଏହିପରି କରିପାର । ସୀମାନ୍ତ, ଉପାନ୍ତ ଓ ଅନୁନ୍ନତ ଅଞ୍ଚଳର କବିମାନଙ୍କୁ ଭୁଲିଯାଅ । ଥରେ କେବଳ ହସ୍ତିନା ନଗରେ ବୁଲି ଆସିଲେ ଘୋଟକ ସଇସ ମଧ ଉତ୍ତମ କବିତା ଓ ନାଟକ ଲେଖିବାର ଦୃଷ୍ଟାନ୍ତ ଦେଇ ପାରିବ । ଏଣୁ ସବୁବେଳେ ହସ୍ତିନାନଗରୁ ଉତ୍ତମ ସାହିତ୍ୟିକ ନିର୍ବାଚନ କରିବ ।

ବିଦୂଷକ ନଂ ଏକ ।। ଜୟ ରାଜା ମହାମହୋପାଧ୍ୟାୟ ବୁଦ୍ଧିଜ୍ଞାନ, ଲାବଣ୍ୟ ପରିପୂର୍ଣ୍ଣ ତ୍ରିଭଙ୍ଗୀଠାମ ସତ୍ୟ ଶ୍ରୀ ନ୍ୟାୟସିନ୍ଧୁ ଶ୍ରୀ ଶ୍ରୀ ଶ୍ରୀ ବଜ୍ରବାହୁଙ୍କର ଜୟ ହେଉ ।

ବିଦୂଷକ ନଂ ଦୁଇ ।। ଜୟ ରାଜାଧିରାଜ, ବୀର ପ୍ରତାପୀ ପରାକ୍ରମୀ କୋଟି ବର୍ଗେଶ୍ୱର ଭାରତେଧୀଶ୍ୱର ହସ୍ତିନାପୁରେଶ୍ୱର ଶ୍ରୀ ଶ୍ରୀ ଶ୍ରୀ ବଜ୍ରବାହୁଙ୍କର ଜୟ ହେଉ ।

ବଜ୍ରବାହୁ ।। ବିଦୂଷକଗଣ—ଯେ ଯାହା କର୍ମକୁ ପ୍ରତ୍ୟାବର୍ତ୍ତନ କର । (ଉଭୟ ଦିଗରେ ଉଭୟଙ୍କର ପ୍ରସ୍ଥାନ ପରେ ଦୂତ ଓ ଘୋଷକ ଗୋଟିଏ ଢୋଲ ଧରି ପ୍ରବେଶ କଲେ ।)

ଘୋଷକ ।। ଆହେ ଶୁଣ, ଶୁଣ ହେ–ପ୍ରବଳ ପରାକ୍ରମୀ ଜ୍ଞାନୀ ସମ୍ରାଟ ବଜ୍ରବାହୁଙ୍କର ଆଜ୍ଞା । (ଢୋଲ) । ସମସ୍ତ ଗୁରୁକୁଳ ଆଶ୍ରମକୁ ବନ୍ଦ କରାଯାଇ, ଆସନ୍ତା ପନ୍ଦର ବର୍ଷ ପର୍ଯ୍ୟନ୍ତ ଆଚାର୍ଯ୍ୟମାନେ ଇଟା ପୋଡ଼ିବେ, ଏବଂ ପଥର ବୋହିବେ । ଏ କଥାକୁ ଅବଜ୍ଞା କଲେ ଶୂଳି ଦଣ୍ଡ ପାଇବେ । (ଢୋଲ ପିଟିବା) — ଆହେ ଶୁଣହେ—ପ୍ରବଳ ପରାକ୍ରମୀ ଜ୍ଞାନୀ ସମ୍ରାଟ ବଜ୍ରବାହୁଙ୍କର ଆଜ୍ଞା (ଢୋଲ) ହସ୍ତିନାପୁର ସୀମାନ୍ତରେ ବସି ନିଜକୁ ଶ୍ରୀକୃଷ୍ଣ ମନେ କରୁଥିବା ବାବା ଯେ ଗେରୁଆ ବସ୍ତ୍ର ପିନ୍ଧେ, ଏବଂ ନାରୀମାନଙ୍କୁ ମସ୍ୟ ରୂପେ ବ୍ୟବହାର କରେ ଏବଂ ମହାପ୍ରତାପୀ ରାଜା ବଜ୍ରବାହୁଙ୍କୁ ଅସ୍ୱୀକାର କରେ— ସେହି ବାବାକୁ ଆଗାମୀ ସୋମବାର ଦିବା ଦ୍ୱିପ୍ରହର ସମୟରେ ଶୂଳିଦଣ୍ଡ ଦିଆଯିବ । (ଘୋଷକ ଏବଂ ଦୂତ ଉଭୟଙ୍କର ପ୍ରସ୍ଥାନ)

(ବିଦୂଷକ ଦ୍ୱୟଙ୍କ ପ୍ରବେଶ)

ବିଦୂଷକ ନଂ ଦୁଇ ।। ଏ ରାଜପ୍ରାସାଦ ଛାଡ଼ି ଚାଲିଯିବା ପାଇଁ ଦୁଃଖ ଲାଗୁଛି ସଖା !

ବିଦୂଷକ ନଂ ଏକ ।। ଦିନେ ନା ଦିନେ ଏ ମମତା ଛାଡ଼ି ଚାଲିଯିବା ପାଇଁ ହେବ ସଖା ! କାରଣ, "କେହି ରହି ନାହିଁ ରହିବେ ନାହିଁଟି ଭବରଙ୍ଗ ଭୂମିତଳେ ।"

ବିଦୂଷକ ନଂ ଦୁଇ ।। କିନ୍ତୁ ଏତେ ଶୀଘ୍ର ଏ ରାଜପ୍ରାସାଦରୁ ଅନ୍ତର ହେବୁ ବୋଲି ଆମର ଧାରଣା ନଥିଲା ସଖା !

ବିଦୂଷକ ନଂ ଏକ ।। ସଖା, ଏ ଅଧମକୁ ମନେ ରଖିଥିବ ସଖା !

ବିଦୂଷକ ନଂ ଦୁଇ ।। ପରୋକ୍ଷରେ କିମ୍ୱା ପ୍ରତ୍ୟକ୍ଷରେ ଆପଣଙ୍କ ନିକଟରେ କିଛି ଦୋଷ କରିଥିଲେ କ୍ଷମା ଦେବ ସଖା !

ବିଦୂଷକ ନଂ ଏକ ।। ଏ ବିଦାୟ ବେଳାରେ ମୋର ହୃଦୟ ଆନ୍ଦୋଳିତ ହେଉଛି ସଖା !

ବିଦୂଷକ ନଂ ଦୁଇ ।। ଉଁ, ଉଁ, ସଖା ! (କାନ୍ଦିଲେ)

ବିଦୂଷକ ନଂ ଏକ ।। ଇଁ... ଇଁ;.. ସଖା !

[ଅଶ୍ରୁ ପୋଛୁ ପୋଛୁ ଚାଲିଗଲେ ଏବଂ ଅତିରିକ୍ତ ସୋମରସ ପାନ କରିଥିବା ମନ୍ତ୍ରୀଦ୍ୱୟ ଶୀଳଭଦ୍ର ଓ ବ୍ରହ୍ମଦତ୍ତ ପ୍ରବେଶ କଲେ]

ବ୍ରହ୍ମଦତ୍ତ ।। (କୁତ୍ସିତ ଲାଗୁଥିବା ହସ) ହାଃ... ହାଂଃ... ହାଃ....

ଶୀଳଭଦ୍ର ।। କ'ଣ ଧରି ଆସିଲାଣି ?

ବ୍ରହ୍ମଦତ୍ତ ।। ଶୀଳଭଦ୍ର ! ଏ ସୋମରସ କେଉଁ ଦେଶର ?

ଶୀଳଭଦ୍ର ।। ଆସ୍ତେ, ଆସ୍ତେ....

ବ୍ରହ୍ମଦତ୍ତ ।। କାହିଁକି ଆସ୍ତେ କହିବି ? ଉଁ ? ମୋର କ'ଣ କହିବାର ଅଧିକାର ନାହିଁ ?

ଶୀଳଭଦ୍ର ।। ହସ୍ତିନାପୁର ବାସିନ୍ଦା ହୋଇ ତୁମର ସେ ଅଧିକାର ନାହିଁ ।

ବ୍ରହ୍ମଦତ୍ତ ।। ମୁଁ ଅର୍ଥାତ୍ ଆମ୍ଭେ, ଆମ୍ଭେ ହସ୍ତିନା ପୁରର ମନ୍ତ୍ରୀଶ୍ରେଷ୍ଠ । ସତ୍ୟ କଥା କହିବୁ । ସତ୍ୟ ବିନା ଆମ୍ଭେ ଅନ୍ୟ କିଛି କହିବୁନି ।

ଶୀଳଭଦ୍ର ।। ବ୍ରହ୍ମଦତ୍ତ ! ତୁମେ କିଛି ସମୟ ପାଇଁ ବିଶ୍ରାମ କର । ନିଶାଦ୍ରବ୍ୟ ସେବନ କଲେ ତୁମ୍ଭେ ଯେ ମହର୍ଷିମାନଙ୍କ ପରି ବ୍ୟବହାର କରୁଅଛ !

ବ୍ରହ୍ମଦତ୍ତ ।। (ଜୋରରେ) ଆମ୍ଭେ ଏ ନଗରର ସର୍ବଶ୍ରେଷ୍ଠ ଜ୍ଞାନୀ ପୁରୁଷ । ଆବଶ୍ୟକ ହୁଅନ୍ତେ ଆମ୍ଭେ ମହର୍ଷି ମଧ ହୋଇପାରୁ ।

ଶୀଳଭଦ୍ର ।। ଆହେ ଏପରି ଉଚ୍ଚ ସ୍ୱରରେ ଚିତ୍କାର କରୁଅଛ କାହିଁକି ? ସମ୍ରାଟ ବକ୍ରବାହୁଙ୍କର ପରାକ୍ରମ କ'ଣ ଜାଣି ନାହଁ ?

ବ୍ରହ୍ମଦତ୍ତ ।। ସମ୍ରାଟ ବକ୍ରବାହୁଙ୍କୁ ଗୁଳିମାର, ସେ ଜୀବିତ ନା ମୃତ ?

ଶୀଳଭଦ୍ର ।। ଆଗରେ ପଡ଼ିଲେ ପଛେ ଯୋଡ଼ ହସ୍ତ ହୋଇ ପ୍ରଶଂସା ଗାନ କରିବ—ଟିକିଏ ସୋମରସ ପଡ଼ିଯାଇଛି ବୋଲି ସମ୍ରାଟଙ୍କୁ ଗୁଳି ମାରୁଛ, ନାହିଁ ?

ବ୍ରହ୍ମଦତ୍ତ ।। ଆମ୍ଭେ ଏ ସାମ୍ରାଜ୍ୟର ମନ୍ତ୍ରୀ ଶ୍ରେଷ୍ଠ । କାହାର ଭୃତ୍ୟ ନୋହୁଁ ।

ଶୀଳଭଦ୍ର ।। ଆର୍ଯ୍ୟ ପୁତ୍ର ! ଆପଣଙ୍କୁ ଭୃତ୍ୟ ବୋଲି କେହି କହି ନାହାନ୍ତି ତ !

ବ୍ରହ୍ମଦତ୍ତ ।। ଆଚ୍ଛା, ଶୀଳଭଦ୍ର ! ହସ୍ତିନାପୁରର ସମସ୍ତ ଶିକ୍ଷାଶ୍ରମ କ'ଣ ଲୋପ କରି ଦିଆଗଲା ?

ଶୀଳଭଦ୍ର ।। ଖାଲି ସେତିକି ନୁହେଁ; ବର୍ତ୍ତମାନ ଘୋଷକ ରାଜ ଦାଣ୍ଡରେ ଘୋଷଣା କରି ଦେଇ ଗଲା ଯେ, ଏଇ ଶିକ୍ଷାଶ୍ରମ ଗୁଡ଼ିକ ଆଗାମୀ ପନ୍ଦର ବର୍ଷ ପର୍ଯ୍ୟନ୍ତ ବନ୍ଦ ରହିବ ।

ବ୍ରହ୍ମଦତ୍ତ ।। ଏ ଆଦେଶ ଦେଲା କିଏ ?

ଶୀଳଭଦ୍ର ।। ଆପଣଙ୍କ ପରାମର୍ଶରେ ରାଜା ବକ୍ରବାହୁ ।

ବ୍ରହ୍ମଦତ୍ତ ।। ଆମ୍ଭେ ମତ ପରିବର୍ତ୍ତନ କରିଅଛୁ ।

ଶୀଳଭଦ୍ର ।। କିନ୍ତୁ ସମ୍ରାଟଙ୍କ ଆଦେଶ ଯେ ଘୋଷିତ ହୋଇସାରିଛି । ସବୁ ଶିକ୍ଷାଶ୍ରମରେ ତାଲା ବନ୍ଦ ହୋଇ ସାରିଲାଣି । ଏବଂ....

ବ୍ରହ୍ମଦତ୍ତ ।। ଆମ୍ଭର ମତ ପରିବର୍ତ୍ତନ କରିବାର ଅଧିକାର ଅଛି । ହଠାତ୍ ଆମ୍ଭେ ସିଦ୍ଧାନ୍ତ ଗ୍ରହଣ କଲୁ ଯେ ଋଷିପୁତ୍ରମାନେ ହସ୍ତିନାପୁରର ଭବିଷ୍ୟତ । ଆର୍ଯ୍ୟାବର୍ତ୍ତର ସେମାନେ ମେରୁଦଣ୍ଡ ।

ଶୀଳଭଦ୍ର ।। ଋଷିମାନଙ୍କର ଶ୍ମଶ୍ରୁ ଅଛି । ଲୋଟା କମଣ୍ଡଳୁଧାରୀ ଶିଷ୍ୟଗଣ କଣ୍ଡୁବଶତଃ ସେମାନଙ୍କର ଯଜ୍ଞ ଭିତରେ ପରିସ୍ରା କଲେ । ହୋମ ବେଳେ ଷଣ୍ଢ ପୂରାଇଲେ ।

ବ୍ରହ୍ମଦତ୍ତ ।। ଅଧୋଗତି, କିନ୍ତୁ ଆମ୍ଭ ରାଜ୍ୟରେ ଏହା କାହିଁକି ଘଟିଲା ?

ଶୀଳଭଦ୍ର ।। ଘନ ଘୋର ଅରଣ୍ୟ ମଧ୍ୟରେ ଥିବା ଶିକ୍ଷାଶ୍ରମଗୁଡ଼ିକୁ ଖାଦ୍ୟ ଓ ପରିଚ୍ଛଦ ପଠାଇବା ପାଇଁ ଅର୍ଥ ନାହିଁ । ଋଷିମାନେ ଯେ କ୍ଷୁଧାର୍ତ୍ତ !

ବ୍ରହ୍ମଦତ୍ତ ।। ସେଥିପାଇଁ ଅର୍ଥ ମନ୍ତ୍ରଣାଳୟ ଦାୟୀ ।

ଶୀଳଭଦ୍ର ।। କିନ୍ତୁ ବର୍ତ୍ତମାନ ଶିକ୍ଷାଶ୍ରମରେ ଏ ଯେଉଁ ତାଲା ବନ୍ଦ ହେଲା ସେଥିପାଇଁ ଅମାତ୍ୟ ବ୍ରହ୍ମଦତ୍ତ ହିଁ ଦାୟୀ ।

ବ୍ରହ୍ମଦତ୍ତ ।। କିନ୍ତୁ ଆମେ ମତ ପରିବର୍ତ୍ତନ କଲୁଣି ।

ଶୀଳଭଦ୍ର ।। ଗୁରୁ ଓ ଶିଷ୍ୟମାନଙ୍କ ଜୀବନକୁ ନେଇ ଖେଳିବା ଏକ ଅପରାଧ ।

ବ୍ରହ୍ମଦତ୍ତ ।। ଅମାତ୍ୟ ଶୀଳଭଦ୍ର । ତୁମ୍ଭର ମନେରଖିବା ଉଚିତ ଯେ ଆମ୍ଭେ ଏ ରାଜ୍ୟର ମନ୍ତ୍ରୀଶ୍ରେଷ୍ଠ ।

ଶୀଳଭଦ୍ର ।। ହୋଇପାରେ, କିନ୍ତୁ ଏପରି ମତ ପରିବର୍ତ୍ତନ କରୁଥିବା ବ୍ୟକ୍ତିଙ୍କୁ ଆମ୍ଭେ ଘୃଣା କରୁ । ଦଳ ପରିବର୍ତ୍ତନ କରିବା ଏକ ଅପରାଧ ।

ବ୍ରହ୍ମଦତ୍ତ ।। ଦଳ ପରିବର୍ତ୍ତନ କରିବା ଆମ୍ଭ ପକ୍ଷରେ ଏକ ଅଭ୍ୟାସ । କାରଣ ଆମ୍ଭେ ଜ୍ଞାନୀପୁରୁଷ । ଜ୍ଞାନ ପ୍ରତିଦିନ ଆମ୍ଭ ମସ୍ତିଷ୍କରେ ବଢୁଅଛି ।

ଶୀଳଭଦ୍ର ।। ଏହାଦ୍ୱାରା ହସ୍ତିନାନଗ୍ରରେ ପ୍ରଶାସନିକ ଅଘଟଣ ଘଟିବ ।

ବ୍ରହ୍ମଦତ୍ତ ।। ସେଥିରେ ଆମ୍ଭର କରିବାର କିଛି ନାହିଁ । ଆମ୍ଭେ ଆମ୍ଭର ଜ୍ଞାନର ପରିସର ବୃଦ୍ଧି କରିବାରେ ବ୍ୟସ୍ତ ।

ଶୀଳଭଦ୍ର ।। କିଏ କହିପାରେ, ଆସନ୍ତା କାଲି ମନ୍ତ୍ରୀଶ୍ରେଷ୍ଠ ବ୍ରହ୍ମଦତ୍ତ ହୁଏତ ଭାବିପାରନ୍ତି ଆଶ୍ରମର ଗୁରୁମାନେ ଶସ୍ୟଶ୍ୟାମଳ କ୍ଷେତ୍ରରେ ଗୋଚାରଣ କରିବା ଉଚିତ !

ବ୍ରହ୍ମଦତ୍ତ ।। ହୋଇପାରେ— । ବର୍ତ୍ତମାନ ସନ୍ଧ୍ୟା ଆସନ୍ନ ପ୍ରାୟ । ଆଉ ଅଳ୍ପ ସମୟ ପରେ ପ୍ରମୋଦଶାଳାରେ ଯେତେବେଳେ ନ୍ୟାୟାଳୟ ବସିବ, ସେତିକିବେଳେ ସମସ୍ୟାର ସମ୍ମୁଖୀନ ହେବାକୁ ମୁଁ ରହିବି ।

ଶୀଳଭଦ୍ର ।। ଆପଣଙ୍କ ପାଇଁ କ'ଣ ଆଉ କିଛି ସମସ୍ୟା ରହିଛି ?

ବ୍ରହ୍ମଦତ୍ତ ।। ବର୍ତ୍ତମାନ ଶୁଣିବାକୁ ପାଇଲି ରାଜା ବଜ୍ରବାହୁଙ୍କ ବିପକ୍ଷରେ ରାଜ୍ୟସାରା ବିପ୍ଳବ ହେଲାଣି । ଆନ୍ଦୋଳନ ହେଲାଣି ।

ଶୀଳଭଦ୍ର ।। ହସ୍ତିନାପୁରରେ ସେପରି ବୀର କିଏ ନାହିଁ ଯେ ସମ୍ରାଟଙ୍କ କଥା ଉପରେ କଥା କହିପାରେ । ତା'ର ଶିରଚ୍ଛେଦନ କରାଯିବ ।

ବ୍ରହ୍ମଦତ୍ତ ।। ମୁଁ ଏକଛତ୍ରବାଦ ଛାଡ଼ି ସମାଜବାଦ ଆଡ଼କୁ ଢଳିଲିଣି ।

ଶୀଳଭଦ୍ର ।। କେବେଠାରୁ ?

ବ୍ରହ୍ମଦତ୍ତ ।। ପଶ୍ଚିମ ଦେଶରୁ, ସାତସାଗର ପାର ହୋଇ ଯେଉଁ ଶ୍ୱେତାଙ୍ଗ ସୌଦାଗର ଆସିଅଛି, ତା'ର ଭାଷଣ ଶୁଣି ମୁଁ ସ୍ତବ୍ଧ ହୋଇଅଛି ।

ଶୀଳଭଦ୍ର ।। ତା'ହେଲେ ଆପଣଙ୍କର ଏଇ ରାଜତନ୍ତ୍ର ଉପରେ ବିଶ୍ୱାସ ନାହିଁ ?

ବ୍ରହ୍ମଦତ୍ତ ।। ପ୍ରାୟ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମ୍ଭେ ସ୍ଥିର କରିଅଛୁ, ହସ୍ତିନାପୁର ଛାଡ଼ି ବିଦେଶକୁ ଚାଲିଯିବୁ । ସେଠାକାର ଯାନବାହନ, ଗୃହଠାରୁ ଆରମ୍ଭ କରି ରମଣୀ ପର୍ଯ୍ୟନ୍ତ ସବୁ କିଛି ଆମ୍ଭଙ୍କୁ ସୁବର୍ଣ୍ଣ ପ୍ରାୟେକ ଦିଶୁଅଛନ୍ତି ।

ଶୀଳଭଦ୍ର ।। ଆପଣଙ୍କୁ ହରାଇ ହସ୍ତିନାପୁର ଯେ ଘୋର ବିପତ୍ତିର ସମ୍ମୁଖୀନ ହେବ ! କାରଣ ଆପଣଙ୍କ ଭଳି ବିଜ୍ଞ ମନ୍ତ୍ରୀ ଏଠାରେ ବିରଳ ।

ବ୍ରହ୍ମଦତ୍ତ ।। ଶୀଳଭଦ୍ର– ! ତୁମ୍ଭେ ଯାହାକୁହ ପଛେ, ହସ୍ତିନାପୁର ଏକ ଗରିବ ରାଜ୍ୟ । ଏଣେ ମହାରାଜା ବଜ୍ରବାହୁଙ୍କର ବିଚାରଧାରା କୁଷ୍ଠରୋଗାକ୍ରାନ୍ତ । ଏ ରାଜ୍ୟର ଜନତା ପାପୀ ଏବଂ ଦୁର୍ନୀତି ପରାୟଣ । ଏଠାରେ ଚୋରି, ଲାଞ୍ଚ, ମିଛ ପ୍ରଭୃତି ଆମ୍ଭେ ହିଁ ପ୍ରଜାମାନଙ୍କୁ ଶିକ୍ଷା ଦେଇଛେ । ତେଣୁ ମୁଁ ଏ ରାଜ୍ୟରୁ ଦୂରରେ ରହିବାକୁ ମନସ୍ଥ କରିଛି ।

ଶୀଳଭଦ୍ର ।। ବ୍ରହ୍ମଦତ୍ତ । ମୁଁ ଦେଖୁଛି ତୁମେ କୃତଘ୍ନ । ବର୍ତ୍ତମାନ ରାଜ୍ୟର ଏକ ସଂକଟମୟ ପରିସ୍ଥିତିରେ ସମ୍ରାଟଙ୍କୁ ଠେଲି ଦେଇ ତୁମେ ଚାଲିଯିବା ପାଇଁ ସ୍ଥିର କରିଛ ।

ବ୍ରହ୍ମଦତ୍ତ ।। କାରଣ ତମେ ଦୁର୍ନୀତିଗ୍ରସ୍ତ । ତମେ ରାଜ୍ୟରେ ପାପଚାରୀ ବଢ଼ାଇ ଚାଲିଛ ।

ଶୀଳଭଦ୍ର ।। ବ୍ରହ୍ମଦତ୍ତ ! ରାଜ୍ୟର ନିରାପତ୍ତା ଦୃଷ୍ଟିରୁ ମୁଁ ତୁମକୁ ବନ୍ଦୀ କରିବି ।

ବ୍ରହ୍ମଦତ୍ତ ।। ମୁଁ ତୁମ୍ଭର ମୁଣ୍ଡକାଟ କରିବି ।

(ଉଭୟେ ତରବାରି ବାହାର କଲେ)

ଶୀଳଭଦ୍ର ।। ଆଜି ରାଜାଙ୍କ ସମ୍ମୁଖରେ ତୁମର ବିଚାର ହେବ ।

ବ୍ରହ୍ମଦତ୍ତ ॥ ମୁଁ ତୁମ୍ଭ ସମ୍ରାଟଙ୍କୁ ସ୍ୱୀକାର କରେନା ।

ଶୀଳଭଦ୍ର ॥ ବିଶ୍ୱାସଘାତକ ! ଶୀଳଭଦ୍ରର ଶାଣିତ ତରବାରି ଦିନେ ତମର ଉଚିତ ଜବାବ ଦେବ ।

ବ୍ରହ୍ମଦତ୍ତ ॥ ହାଃ...ହାଃ...ହାଃ...

[ମଞ୍ଚ ଅନ୍ଧାର ହେଲା । କ୍ରମଶଃ ରାତ୍ରିର ଇଙ୍ଗିତ ଓ ପ୍ରମୋଦଶାଳା ପୁନରାୟ ଚିତ୍ରିତ ମନେହେଲା । ପ୍ରବେଶ କଲେ ସଖୀଦ୍ୱୟ ।]

ପ୍ରଥମ ସଖୀ ॥ ଶୁଣମ ବଉଳ !

ଦ୍ୱିତୀୟ ସଖୀ ॥ ମତେ କିଛି ଶୁଭୁନି । ଏ ପ୍ରମୋଦଶାଳାକୁ ଦେଖି ମନ ଖାଲି କ'ଣ କ'ଣ ହେଇଯାଉଛି ।

ପ୍ରଥମ ସଖୀ ॥ ତମ ନାଗର ଚାଲିଗଲେ ବୋଲି ?

ଦ୍ୱିତୀୟ ସଖୀ ॥ ସୁଖଦା ଆଶ୍ରମର ଉପକୁଳପତି କ'ଣ ମୋ' କଥା ମନେରଖିବେ ? କିନ୍ତୁ ରାଣୀ ମା' ?

ପ୍ରଥମ ସଖୀ ॥ ବିଚାରା ! ଏ ରାତିକୁ ଉପଭୋଗ କରିବା ପାଇଁ ତାଙ୍କର ଭାଗ୍ୟ କାହିଁ ?

ଦ୍ୱିତୀୟ ସଖୀ ॥ ଅବନ୍ତୀ ସାଧବ ଚାଲିଗଲା ।

ପ୍ରଥମ ସଖୀ ॥ ସମ୍ରାଟ ପରା ରାଜ୍ୟରେ ସନ୍ତାନ ବନ୍ଦ କରିବା ପାଇଁ ଆଦେଶ ଦେଇଛନ୍ତି !

ଦ୍ୱିତୀୟ ସଖୀ ॥ ସମ୍ରାଟ କ'ଣ...

ପ୍ରଥମ ସଖୀ ॥ ମୋର ସନ୍ଦେହ ହେଉଛି । ସେ ବୋଧହୁଏ ଶୁଷ୍କ ମରୁଭୂମି ।

ଦ୍ୱିତୀୟ ସଖୀ ॥ ରାଜା ଅଭିଶପ୍ତ ! ତେଣୁ ରାଜ୍ୟର ରାଣୀ ବନ୍ଧ୍ୟା । ମାଟି ଶୁଷ୍କ ।

ପ୍ରଥମ ସଖୀ ॥ ଦୁଃଖ ଲାଗୁଛି । ଚାଲମ ସଖୀ, ରାଣୀମାଙ୍କୁ ଡାକି ଆଣିବା...

ଦ୍ୱିତୀୟ ସଖୀ ॥ ଏଇତ ! ରାଣୀମା' ଆସୁଛନ୍ତି !! ଚାଲ ଆମେ ଲୁଚିଯିବା....

କେତକୀଗନ୍ଧା ॥ (ପ୍ରବେଶ କରି) ଲବଙ୍ଗ....ଅଳେଇଚ... ତମେ ଆସି ଏଠି... ମୁଁ ତେଣେ ତମକୁ ରଙ୍ଗଶାଳାରେ ଖୋଜୁଛି...

ପ୍ରଥମ ସଖୀ ॥ ରାଣୀ ମା' ! ଏଇ ଦେଖ ଜହ୍ନ !

ମନେହୁଏ ଆକାଶର ପ୍ରମୋଦଶାଳାରେ ସତେ ଅବା ରୌପ୍ୟର ଫଳକ । ଆଃ, କି ସୁନ୍ଦର ! ମନେହୁଏ ଛୁଇଁବାକୁ ଆକାଶୀ କନ୍ୟାର ସେଇ ସଫେଦ ପଣତ ।

କେତକୀଗନ୍ଧା ।। ସେ ରୌପ୍ୟ ଫଳକ ନୁହେଁ କେତକୀଗନ୍ଧାର । ଛୁଇଁବାକୁ ଭଲ ଲାଗେ, ହାତପାଏ ନାହିଁ ।

ଦ୍ୱିତୀୟ ସଖୀ ।। ସତେ ଅବା ସରଗର ଅପସରାଟିଏ ‍ସଖୀ ସଙ୍ଗେ କଳି କରି ଅଝଟ ହେଇଚି । ଆକାଶ ଏକଣା ଘରେ ଏକେଲା ବସିଛି । ମୁହଁ ଫୁଲେଇଚି ।

ପ୍ରଥମ ସଖୀ ।। ଅଭିମାନ କରି । ଦେଖିବନି ସିଏ ଆଉ ସୂରୁଯର ନିଉଛୁଣା ମୁହଁ ।

ରାଣୀ ।। ସୁନ୍ଦର ! ସୁନ୍ଦର ଏ ଜହ୍ନ ଆଉ ତାରାର ଆକାଶ ! ସବୁ ଲାଗେ ସ୍ୱପ୍ନ ଭଳି—ସବୁ ଲାଗେ ଭଲ ।

ଦ୍ୱିତୀୟ ସଖୀ ।। ଚାଲଯିବା ପୁଷ୍କରିଣୀ ତୀରେ । ନୀଳ ଆଉ ରକ୍ତ କଇଁ ଅଭିସାର ନେଇ, ଅପଲକ ନୟନରେ ଏ ଜହ୍ନକୁ ଚାହିଁ ବାଢୁଥିବେ ଅବା ପ୍ରୀତି ଉପହାର ।

ପ୍ରଥମ ସଖୀ ।। ଆଉ ମରାଳର ରତି !

ରାଣୀ ।। ସ୍ୱପ୍ନମୟ ଏ ସନ୍ଧ୍ୟାରେ ମନେଆସେ କେତେ ସ୍ମୃତି– ବୈଶାଳୀ ନଗରୀ ଜନ୍ମଭୂମି, ମାତୃଭୂମି । କେଳି କଉତୁକ ଆଉ ସଖୀ ସହଚରୀ । କେତେ ଜ୍ୟୋତ୍ସ୍ନା, କେତେ ସ୍ୱପ୍ନ । ପକ୍ଷୀରାଜ ଘୋଡ଼ା ଆଉ ନନ୍ଦନବନର । ପୁଷ୍ପବାଟୀ, ପୁଷ୍ପଶଯ୍ୟା ଗହମୀ ନିଦର । ସେଇ ମୋର ପିତ୍ରାଳୟ ବୈଶାଳୀ ନଗରୀ ।

ପ୍ରଥମ ସଖୀ ।। ଆଚ୍ଛା, ରାଣି ! ତମେ କି ଦେଖିନ କେବେ ସ୍ୱପ୍ନ କେଉଁ ରାଜକୁମାରର ? ଯେତେବେଳେ ଥିଲ ତୁମେ—ଅନୂଢ଼ା କୁଆଁରୀ— କିଏ କିଗୋ କରିନାହିଁ ତୁମ ଚିତ୍ତ ଚୋରୀ ?

ରାଣୀ ।। ସ୍ୱପ୍ନ ? ହଁ ହଁ ଦେଖିଥିଲି । ଘୁମାଇ ପଡ଼ିଲି ଯେବେ ବୈଶାଳୀର ପୁଷ୍ପ ବିଥି ପରେ, – ଝରଣାର ଛଳ ଛଳ ମହୁଲି ନିଶାରେ । ସେଇ ଏକ ଚାନ୍ଦିନୀ ରାତିରେ... ଜାଣେନା ମୁଁ କିଏ ସିଏ ଅଜଣା ଦେଶର ରଜାପୁଅ,

ମନ୍ତ୍ରୀପୁଅ, କିବା ସୌଦାଗର— ଡାକି ମୋତେ ନେଇଥିଲା କାଉଁରୀ ନଗର ।

ଦ୍ୱିତୀୟ ସଖୀ ॥ ସତେ ! ଆଉ ତମେ ତା ସଙ୍ଗେ ଲୁଚି ପଳେଇଥିଲ ପୁଷ୍ପବାଟିକାରୁ ?

ପ୍ରଥମ ସଖୀ ॥ ଅବଶ୍ୟ ସ୍ୱପ୍ନରେ ।

ଦ୍ୱିତୀୟ ସଖୀ ॥ କିନ୍ତୁ କେଉଁଠି ସେ କାଉଁରୀ ନଗର ?

ରାଣୀ ॥ ଜାଣିଥିଲେ ନେଇଥାନ୍ତି ତୁମକୁ ବି ସଖି !

ପ୍ରଥମ ସଖୀ ॥ ନା ନା ଆମେ ଯିବା ପାଇଁ ଚାହୁଁନା ଗୋ । ଖାଲି ଅଳ୍ପରେ ବର୍ଣ୍ଣନା କର କାଉଁରୀ ନଗର ।

ରାଣୀ ॥ ପୁଷ୍ପବାଟିକାରୁ ମତେ କିମିଆଁ କଲା ସେ । ମୁଁ ଉଡ଼ିଲି ତାହା ପଛେ ଯଥା ଏକ ଉଡ଼ନ୍ତା ଚଢ଼େଇ । ସତେଅବା ପୃଥିବୀର ମାୟାମୋହ, ରାଜବାଟି ମମତା ତୁଟେଇ । ଜାଣ ସଖୀ, ସିଏ ମୋତେ ନେଇଗଲା ଦୂରେ... ବହୁଦୂରେ... ଦିଗନ୍ତ ସେପାରେ । ସେଠାରେ ସମୁଦ୍ର ଏକ ସଫେଦ ରଙ୍ଗର । ତା ମଧ୍ୟରେ ଅଛି ଏକ ଅଲେଇଚ ଦ୍ୱୀପ... ଆଉ – ଆଉ କିଛି ମନେ ନାହିଁ । ...ହଁ ହଁ... ଛୋଟିଆ ବୋଇତଟିଏ ଭାସୁଥିଲା କ୍ଷୀର ସମୁଦ୍ରରେ ଏବଂ ସେଠି ବସି ଗାଉଥିଲି ଗୀତ ମୁଁ ଅନ୍ୟସ୍ୱର ପରୀ ରାଇଜର । ମୋ ବୋଇତ ଭାସୁଥିଲା କେଜାଣି କେଉଁଠି... ସଫେଦ ସମୁଦ୍ରେ ଅବା କୃଷ୍ଣହ୍ରଦ ନିସ୍ତରଙ୍ଗ ଜଳେ । କିଛି ମନେ ନାହିଁ... ଖାଲି ଏକ ପାହାଡ଼ର ଛାଇ, ଧାଉଁଥିଲା ମୋ' ବୋଇତ ପାଇକୁ ଅନାଇ !

ଦ୍ୱିତୀୟ ସଖୀ ॥ ତା'ପରେ ତମେ ଯାଇ ପହଞ୍ଚିଲ ଅଳେଇଚ-ଦ୍ୱୀପରେ ?

ପ୍ରଥମ ସଖୀ ॥ ଆଉ ସିଏ ? ଯିଏ ତୁମକୁ ନେଉଥିଲା ଦୂରେ... ବହୁଦୂରେ... ଦିଗନ୍ତ ସେପାରେ ?

ରାଣୀ ॥ କିଛି ମନେ ନାହିଁ ।

ଦୁଇଟି ସଖୀ ଏକତ୍ର ॥ (ହସି ହସି) ଜାଣୁଁ...ଆମେ ଜାଣୁ ଗୋ... ଆଗୋ ଜାଣୁଁ ।

ରାଣୀ ॥ ଯାଃ ।

ପ୍ରଥମ ସଖୀ ॥ ରାଣୀ ମା ! ତମର ସେ ସଫେଦ ସମୁଦ୍ର ଅବା କୃଷ୍ଣ ହ୍ରଦ ନିସ୍ତରଙ୍ଗ ଜଳେ, ବୁଢ଼ୀ ଅସୁରୁଣୀ ଥିଲା ?

ଦ୍ୱିତୀୟ ସଖୀ ।। ସାତତାଳ ପାଣି ତଳେ ରଜାପୁଅ ବନ୍ଦୀ ହୋଇ ମେଣ୍ଢା ହୋଇଥିଲା ?

ରାଣୀ ।। କିଛି ମନେ ନାହିଁ । ଖାଲି ସ୍ମୃତି ଅଛି । ସେଇ ତନ୍ଦ୍ରା ଘେରା ଚାନ୍ଦିନୀ ରାତିର ।

ପ୍ରଥମ ସଖୀ ।। ତା'ହେଲେ ଏହି ସ୍ନିଗ୍ଧ କାନ୍ତ ପୁଷ୍ପ ବାଟିକାରେ ଗଢ଼ି ଏକ ସ୍ୱପ୍ନର ଉଆସ ଦେଖୁଥାଅ ସ୍ୱପ୍ନ ।

ଦ୍ୱିତୀୟ ସଖୀ ।। କ୍ଲାନ୍ତି ନାହିଁ, ଚିନ୍ତା ନାହିଁ... ସାମ୍ରାଜ୍ୟର, ପ୍ରଜାଙ୍କର କିମ୍ବା ସନ୍ତାନର । ମନେକର ହଠାତ୍ ଏ ପୃଥିବୀର ହେଲା ରୂପାନ୍ତର । ସବୁ ପ୍ରଜା ଭାସୁଛନ୍ତି ପ୍ରାଚୁର୍ଯ୍ୟର ଫେନିଳ ହ୍ରଦରେ କିମ୍ବା ସବୁ ପ୍ରଜା ଉଡ଼ିଗଲେ ଦିଗନ୍ତ ସେପାରେ ।

ରାଣୀ ।। ତା'ହେଲେ ରାଜାଙ୍କୁ କହି ପ୍ରମୋଦଶାଳାରେ ତୋଳାଇବି ଏକ କାଚର ମନ୍ଦିର । ସୂର୍ଯ୍ୟ ଉଦେ ହେଲେ ଆଗେ ସେଇ କାଚଘରେ ଢାଳି ଦେଇଯିବ ତା'ର ପ୍ରଥମ କିରଣ ।

ପ୍ରଥମ ସଖୀ ।। ଆଃ, ଇନ୍ଦ୍ରଧନୁ ହେଉ ତା'ର ପ୍ରଥମ ତୋରଣ ।

ଦ୍ୱିତୀୟ ସଖୀ ।। ପ୍ରବାଳ ରାଜ୍ୟର କିଛି ବର୍ଣ୍ଣାଢ଼୍ୟ ମୁକ୍ତାରେ ସଜାହେଉ ଅଳିନ୍ଦ ତାହାର ।

ରାଣୀ ।। ସେଇଠି ମୁଁ ବସିଥିବି ସେଇ କାଚଘରେ । ଇନ୍ଦ୍ରଧନୁ, ପ୍ରବାଳ ଓ ମୁକ୍ତା ଉହାଡ଼ରେ ଏବଂ ଗାଉଥିବି ବଂଶୀଟିଏ ଧରି ।

ପ୍ରଥମ ସଖୀ ।। କିନ୍ତୁ ରାଣି ! ବଂଶୀ ନ ହୋଇ ଯଦି ବୀଣା ହୁଅନ୍ତା ?

ରାଣୀ ।। ନା ନା—ସବୁଠାରୁ ଭଲ ଲାଗେ ମୋତେ ବଂଶୀର ମୂର୍ଚ୍ଛନା । ସେଇଠି ବୁଣିବି ମୁହିଁ କଳପଣା ଜାଲ... ସ୍ୱପ୍ନର ରହସ୍ୟ । ସୁବର୍ଣ୍ଣର ତନ୍ତୁଆଣି ବୁଣିବି ମୁଁ ଝୀନ ଉତ୍ତରୀୟ ଏବଂ ଗାଇବି ମୁଁ ଗୀତ ଏକ ଅନ୍ୟ ଆକାଶର । ସୂର୍ଯ୍ୟ ଆସି ଢାଳିଦେବ ପ୍ରଥମ କିରଣ । ପକ୍ଷୀ ଆସି ଦେଇଯିବ ପ୍ରଥମ ବାରତା ଏବଂ ଦିନ ସାରା ସୁବର୍ଣ୍ଣ ତନ୍ତୁରେ ବୁଣି ଝୀନ ଉତ୍ତରୀୟ, କାଚ ଘରେ ଦେଖୁଥିବି ମୁହଁଟି ମୋହର ।

ପ୍ରଥମ ସଖୀ ।। ସମ୍ରାଟ ଆସିବେ ଯେବେ ଲୁଚି ଲୁଚି ପ୍ରମୋଦଶାଳାରେ ?

ରାଣୀ ।। କହିବିନି କଥା—ସେ ଯେବେ ବୁଝିବେ ମୋର ବଂଶୀର ସ୍ୱର... ସେ ଯଦି ବୁଝିବେ ମୋର ସୁବର୍ଣ୍ଣ ତନ୍ତୁର ଏହି କଳପଣା ଜାଲ... ଭଲ ଅତି ଭଲ ।

ଦ୍ୱିତୀୟ ସଖୀ ।। ଯଦି ନ ବୁଝନ୍ତି ? ଏବଂ ସମ୍ରାଟ ଯାଆନ୍ତି ଚାଲି ଏଡ଼ି ଦେଇ ସ୍ୱପ୍ନର ମନ୍ଦିର, ତମ କାଚଘର ?

ରାଣୀ ।। ଅସମ୍ଭବ ନୁହେଁ, କିନ୍ତୁ ସେଥିରେ ମୋର୍ ଯାଏ କେତେ, ଆସେ କେତେ... ଆପେ ଆପେ ଚନ୍ଦ୍ର ଉଇଁ ଛୁଇଁଯିବ ମୋର କାଚଘର... ପୁଣି ଲିଭିଯିବ ଆଉ ଏକ ପାହାନ୍ତାର ସୂର୍ଯ୍ୟକିରଣରେ... ପୁଣି ହେବ ଚନ୍ଦ୍ରରାତି... ଝୀନ ଉତ୍ତରୀରେ ହେବ ପୁଣି ନୂଆ ଅଭିସାର ।.....

ପ୍ରଥମ ସଖୀ ।। ନୂଆ ଅଭିସାର ?

ରାଣୀ ।। ସେଇମିତି ଜହ୍ନରାତି, ଝିଲିମିଲି ସ୍ଥିର ପୁଷ୍କରିଣୀ... ଦୂରାଗତ କେଉଁ ଏକ ଟାପୁଶବ୍ଦ... ଧାବମାନ ଅଶ୍ୱ ଭାଙ୍ଗିବ ମୋ ବଂଶୀର ମୂର୍ଚ୍ଛନା... ଆଖିରେ ଭରି ପଲକେ ସପନ, ମୁଁ ଚାହିଁବି ଅଶ୍ୱପୃଷ୍ଠେ ସେହି ସୁପୁରୁଷ... ମୋ ଆଡ଼କୁ ଚାହୁଁଥିବା ମୋ ସୁପ୍ତ କାମନା ଏବଂ ମନର ମଣିଷ । ତା'ପରେ... ତା'ପରେ... !

ପ୍ରଥମ ସଖୀ ।। ତା'ପରେ ?

ରାଣୀ ।। ଭାଙ୍ଗିଯିବ ଏଇ ମୋର କାଚର ବନ୍ଦର । ମୁଁ ଉଛୁଳି ମାନିବିନି କୂଳ ବା କିନାରା । ଧାଇଁଯିବି ତା ପଛେ ଦୂରେ ବହୁ ଦୂରେ । ଆଉ କ୍ଲାନ୍ତ ହୋଇ କେଉଁ ଏକ ଅରଣ୍ୟ ଭିତରେ ଘୁମାଇ ପଡ଼ିବି । ସେଇ ହେବ ଚିର ନିଦ୍ରା ମୋର । ମୁଁ ଜାଣେ—ଦିନେ ସେଇ ମନର ମଣିଷ ବାହୁଡ଼ିବ ସେହି ପଥେ ଦେଖି ମୋର ନିଷ୍ପ୍ରାଣ ଶରୀର, ଯଦି କେବେ ଢାଳିଦେବ ଲୁହ ଦୁଇଧାର... ସଖୀ, ସେଇ ମୋର ବ୍ୟଥାତୁର ଦୁଃଖର ପାହାନ୍ତି ।

ଦ୍ୱିତୀୟ ସଖୀ ।। କି ନିଉଛଣା କଥା ଯେ ତୁମେ କୁହ ରାଣୀ ମା !

ପ୍ରଥମ ସଖୀ ।। ଚାଲ ରାଣୀ ମା... ସମୟ ଉତ୍ତୀର୍ଣ୍ଣ ପ୍ରାୟ ! ଏ ହେଲା ଶୁଭରାତ୍ରି ପ୍ରଥମ ପ୍ରହର... ଚାଲଯିବା ରାଣୀହଂସପୁର । ହୁଏତ ସମ୍ରାଟ ଆସି ଏବେ ନ୍ୟାୟ ଦେବେ ହସ୍ତିନା ନଗ୍ରର ।

ରାଣୀ ।। ଚାଲ ସଖୀ (ପ୍ରସ୍ଥାନ)

(ସମସ୍ତେ ଗଲାପରେ ଅନ୍ତରାଳରୁ ମୃତ୍ତିକା ଭାଣ୍ଡଧାରୀ ପଛରେ ରାଜା ବଜ୍ରବାହୁ ଓ ମନ୍ତ୍ରୀ ଶୀଳଭଦ୍ର ଆସିଛନ୍ତି)

ବଜ୍ରବାହୁ ।। ଦେଖୁଛ ଅମାତ୍ୟ ! ବଜ୍ରବାହୁଙ୍କ ଆଦେଶରେ ଏ ମୃତ୍ତିକାଭାଣ୍ଡ କିପରି ଦିନକୁ ଦିନ ବଢ଼ିଚାଲିଛି !

ଶୀଳଭଦ୍ର ।। ଏହା ଛାମୁଙ୍କର ବର୍ଦ୍ଧନଶୀଳ ଶକ୍ତିର ପରିଚାୟକ ।

ବଜ୍ରବାହୁ ।। ମୋର ଶକ୍ତି ଅଧିକ ବୋଲି ଖାଲି ଆପଣ କାହିଁକି, ଏ ଦେଶର ପଶୁପକ୍ଷୀ, ବୃକ୍ଷଲତା ମଧ୍ୟ ଜାଣିଅଛନ୍ତି ।

ଶୀଳଭଦ୍ର ।। ଛାମୁ !

ବଜ୍ରବାହୁ ।। ସେଥିପାଇଁ ଆମ୍ଭେ ଆମ୍ଭର ସୃଷ୍ଟି ପରିବର୍ତ୍ତନ କଲୁ । ନରବିଷ୍ଣୁ ହୋଇ ଦିନକୁ ରାତି ଏବଂ ରାତିକୁ ଦିନ ମଧ୍ୟ କଲୁ ।

ଶୀଳଭଦ୍ର ।। ଜଣେ କ୍ରାନ୍ତିକାରୀ ସମ୍ରାଟ ହିସାବରେ ଆପଣ ବିଶ୍ୱରେ ସୁପରିଚିତ ।

ବଜ୍ରବାହୁ ।। ଆଚ୍ଛା ଶୀଳଭଦ୍ର ! ଏତେ ବଡ଼ ହସ୍ତିନା ରାଜ୍ୟରେ ଆମ୍ଭର କେହି ଶତ୍ରୁ ନାହାନ୍ତି କିପରି ? କେମନ୍ତେ ଏ ବିଶ୍ୱବ୍ରହ୍ମାଣ୍ଡ ଆମ୍ଭ ବାକ୍ୟକୁ ଅନ୍ୟଥା କରୁ ନାହାନ୍ତି ?

ଶୀଳଭଦ୍ର ।। ଚନ୍ଦ୍ର ସୂର୍ଯ୍ୟ ଯେତେବେଳେ ଶ୍ରୀଛାମୁଙ୍କ ଆଦେଶ ଅମାନ୍ୟ କରୁନାହାନ୍ତି, ସେମାନେ ବା କରନ୍ତେ କିପରି ?

ବଜ୍ରବାହୁ ।। କିନ୍ତୁ ଆମ୍ଭେ ଶୁଣିଲୁ—ଗୁରୁକୁଳ ଆଶ୍ରମରେ ଋଷିପୁତ୍ରମାନେ ବିପ୍ଳବ କରୁଅଛନ୍ତି !

ଶୀଳଭଦ୍ର ।। ନାବାଳକମାନେ ପ୍ରଭୁ ! ସେମାନେ ସ୍ତନ୍ୟପାୟୀ ଶିଶୁ । ତାହାଙ୍କ ବାକ୍ୟ ବିପ୍ଳବ ନୁହେଁ ।

ବଜ୍ରବାହୁ ।। ଆମ୍ଭେ ସେମାନଙ୍କୁ ଭ୍ରୂକ୍ଷେପ କରୁନାହୁଁ ।

ଶୀଳଭଦ୍ର ।। କିନ୍ତୁ ଦେଶର ଅବସ୍ଥା ଅତି ସଂକଟଜନକ ।

ବଜ୍ରବାହୁ ।। ଚିନ୍ତା ନାହିଁ । ଆମ୍ଭେ ଏହି ରଜତ ଜୟନ୍ତୀ ବର୍ଷରେ ଗ୍ରାମେ ଗ୍ରାମେ ନଗ୍ରେ ନଗ୍ରେ ସୋମରସ ବଣ୍ଟନର ବ୍ୟବସ୍ଥା କରିଦେଇଅଛୁ । ଆମ୍ଭ ଜନତା ତାକୁ ପାନ କରି ଦିବା ସମୟରେ ଦିବ୍ୟ ନିଦ୍ରାରେ ଶୟନ କରିବେ । ସେମାନଙ୍କୁ ରାଜ୍ୟର କୌଣସି ସମସ୍ୟା ଚିନ୍ତା କରିବାକୁ ପଡ଼ିବ ନାହିଁ ।

ଶୀଳଭଦ୍ର ।। ବଜ୍ରବାହୁଙ୍କ ଛତ୍ର ତଳେ ପ୍ରଜାଙ୍କର ଚିନ୍ତା ଲୋପ ପାଇଅଛି ।

ବଜ୍ରବାହୁ ।। ଆମ୍ଭ ଶାସନର ଏହି ସୁବର୍ଣ୍ଣ ଯୁଗରେ ଏକ "ବଜ୍ରାବ୍ଦ"ର ପ୍ରଚଳନ କରାଯାଉ । ଆମ୍ଭେ ଏକ ନୂତନ ସୃଷ୍ଟିର

ପ୍ରଯୋଜକ । ଆମ୍ଭ ସାମ୍ରାଜ୍ୟରେ ବିପ୍ଲବ ନାହିଁ, ଦୁଃଖ ନାହିଁ କି ଚିନ୍ତା ନାହିଁ ।

ଦୂତ ।। (ପ୍ରବେଶ କରି) ଛାମୁ ! ଜଣେ ସୌଦାଗର ଛାମୁଙ୍କର ଦର୍ଶନପ୍ରାର୍ଥୀ—

ବଜ୍ରବାହୁ ।। ତାଙ୍କୁ ଭିତରକୁ ଆସିବା ପାଇଁ ଆଦେଶ ଦେଲୁ ।

ଦୂତ ।। ଛାମୁ ! (ଚାଲିଗଲା)

ବଜ୍ରବାହୁ ।। ଏ ସୌଦାଗର କିଏ ହୋଇ ପାରନ୍ତି ?

ଶୀଳଭଦ୍ର ।। ଅବନ୍ତୀନଗ୍ରର ଜଣେ ସାଧବ ଏଠାରେ ସ୍ୱପ୍ନ ବିକ୍ରୀ କରୁଥିଲେ ବୋଲି ଶୁଣିଥିଲି ।

ବଜ୍ରବାହୁ ।। ଆମ୍ଭେ ମଧ ସେ ସଂପର୍କରେ ଜ୍ଞାତ ଥିଲୁ । କିନ୍ତୁ ତାହା ଯେ ଅନେକ ଦିନର ଘଟଣା !

ଶୀଳଭଦ୍ର ।। ତା ହେଲେ....

[ଶୃଗାଳସେନ ସୌଦାଗରଙ୍କର ପ୍ରବେଶ]

ଶ୍ୱେ. ସୌଦାଗର ।। ଚମ୍ରାଟ ବଜ୍ରବାହୁଙ୍କୁ ଶୃଗାଳ ଚେନ ଚୌଦାଗରର ଚମ୍ମାନ ଜଣାକଲୁ ।

ବଜ୍ରବାହୁ ।। ଅମାତ୍ୟ ! ଏ ସୌଦାଗରଙ୍କର ଭାଷା ଆମ୍ଭେ ବୁଝିବା ପାଇଁ ଅକ୍ଷମ ହେଉଅଛୁ । ଆର୍ଯ୍ୟପୁତ୍ରଙ୍କୁ କୁଶଳ ପୁଛା କର ।

ଶୀଳଭଦ୍ର ।। ସୌଦାଗରଙ୍କ ନାମ ଶୃଗାଳସେନ ।

ଶ୍ୱେ. ସୌଦାଗର ।। ଛାମୁଙ୍କର ଚର୍ବ କୁଚଳ ତ ?

ଶୀଳଭଦ୍ର ।। ଆପଣଙ୍କର କୁଶଳ ପୁଛା କରୁଅଛନ୍ତି ସୌଦାଗର ।

ବଜ୍ରବାହୁ ।। ସୌଦାଗର ଆପଣ କେଉଁ ଦେଶରୁ ଆସିଅଛନ୍ତି ? ଆପଣଙ୍କର ଦେହ ଶ୍ୱେତବର୍ଣ୍ଣ ହୋଇଅଛି କିପରି ?

ଶୀଳଭଦ୍ର ।। ଶୃଗାଳସେନ ! ଆପଣଙ୍କ ଦେହ ଏତେ ଶ୍ୱେତ କିପରି ହେଲା ?

ଶୃଗାଳସେନ ।। ଆମ୍ଭେ ଚପ୍ତ ଚାଗର ପାରି ହୋଇ ଛାମୁଙ୍କ ଚାମ୍ରାଜ୍ୟକୁ ଆଚିଅଛୁ । ଚପ୍ତ ଚାଗର ଆରପଟେ ଚମତ୍ଙ୍କର ଚରୀର ବର୍ଣ୍ଣ ଚ୍ୱେତ ଅଟଇ ।

ବଜ୍ରବାହୁ ।। ଏ ସଂବାଦ ଶୁଣି ଆମ୍ଭେ ପ୍ରୀତ ହେଲୁ । ଅମାତ୍ୟ, ଆମ୍ଭ ଦରବାରକୁ ଆସିବାର କାରଣ ପୁଛା କରନ୍ତୁ ।

ଶୃଗାଳସେନ ।। ଆମ୍ଭେ ଚୁଣିବାକୁ ପାଇଲୁ ଯେ ଚମ୍ରାଟଙ୍କ ରାଜ୍ୟରେ ଚବୁ

ମନୁଷ୍ୟମାନେ ବୁଦ୍ଧିମାନ । ସମ୍ରାଟଙ୍କ ରାଜ୍ୟରେ ସୁବର୍ଣ୍ଣଯୁଗ ଚାଲିଅଛି । ସମ୍ରାଟଙ୍କ ପ୍ରଜାମାନେ ଖୁବ୍ ସୁଖରେ ଅଛନ୍ତି ।

ବଜ୍ରବାହୁ ।। ଅମାତ୍ୟ ! ସୌଦାଗର ଶୃଗାଳସେନଙ୍କୁ ଆମ୍ଭ ତରଫରୁ ଏବଂ ଆମ୍ଭ ସାମ୍ରାଜ୍ୟର ପ୍ରଜାମାନଙ୍କ ତରଫରୁ ଅଭିବାଦନ ଜଣାଇ ଦିଅନ୍ତୁ ।

ଶୃଗାଳସେନ ।। ଆମ୍ଭ ଦେଶର ମନୁଷ୍ୟମାନଙ୍କ ତରଫରୁ ମୁଁ ସମ୍ରାଟଙ୍କୁ ମଧ ଅଭିବାଦନ ଜଣାଉ ଅଛି । ଶ୍ରୀ ଛାମୁ ଆଦେଶ କଲେ ସାମାନ୍ୟ କଥା କହିବା ପାଇଁ ସୁଯୋଗ ପାଆନ୍ତି ।

ଶୀଳଭଦ୍ର ।। ଛାମୁ—ଆପଣଙ୍କର ଆଦେଶ ହେଲେ ସେ କିଛି କହିବା ପାଇଁ ସୁଯୋଗ ପାଇବେ ।

ଶୃଗାଳସେନ ।। (ମୁଣି ଭିତରୁ ସୋମରସ ବାହାର କରି) ସପ୍ତ ସାଗର ଆରପଟେ ଆମ୍ଭେ ଉତ୍କୃଷ୍ଟ ସୋମରସ ତିଆରି କରୁ । ସେଥିରୁ ଗୋଟିଏ ସିସି ଆପଣଙ୍କ ପାଇଁ ଆଣିଅଛି ।

ଶୀଳଭଦ୍ର ।। (ଗ୍ରହଣ କରି) ଶୃଗାଳସେନ ସୋମରସ ଭେଟି ପ୍ରଦାନ କରୁଅଛନ୍ତି ଛାମୁ, ଗ୍ରହଣ କରନ୍ତୁ ।

ବଜ୍ରବାହୁ ।। ବସ ! ତୁମ୍ଭେ ବର୍ତ୍ତମାନ ଯାଇପାର (ଧୀରେ ଧୀରେ ଚାମରଧାରୀଙ୍କ ପ୍ରସ୍ଥାନ) ଆମ୍ଭର ଆନ୍ତରିକ ଧନ୍ୟବାଦ । ଆମ୍ଭେ ଏହି ସୋମରସ ବହୁଦିନରୁ ଖୋଜୁଥିଲୁ ଏବଂ ପାଉ ନଥିଲୁ ।

ଶୃଗାଳସେନ ।। ସମ୍ରାଟ ଏହାକୁ ଥରେ ଚାଖି ଦେଖନ୍ତୁ । ସୌଦାଗର ଶୃଗାଳସେନଙ୍କୁ ବହୁଦିନ ପର୍ଯ୍ୟନ୍ତ ମନେ ପକାଉଥିବେ ।

ବଜ୍ରବାହୁ ।। ଅମାତ୍ୟ ! ବର୍ତ୍ତମାନ ଆମ୍ଭେ ଏହାକୁ ଚାଖି ଦେଖିବୁ । (ସେ ସୋମରସ ପାନ କଲେ)

ଶୃଗାଳସେନ ।। ସାଧୁ । ସାଧୁ ।

ବଜ୍ରବାହୁ ।। ବର୍ତ୍ତମାନ ଆସିବାର କାରଣ ବ୍ୟାଖ୍ୟା କରନ୍ତୁ ।

ଶୃଗାଳସେନ ।। ଆମ୍ଭେ ଶୁଣିବାକୁ ପାଇଲୁ ଏ ରାଜ୍ୟରେ ଖାଦ୍ୟ ସଙ୍କଟ ପଡ଼ିଅଛି । ଆମ୍ଭେ କିଛି ସାହାଯ୍ୟ କରିବୁ । କିଛି ଖରିଦ୍ କରିବୁ କିଛି ବିକ୍ରୀ କରିବୁ ।

ବଜ୍ରବାହୁ ।। ଅମାତ୍ୟ !

ଶୀଳଭଦ୍ର ।। ଶ୍ୱେତାଙ୍ଗ ସୌଦାଗର ଆମ୍ଭ .ଦେଶକୁ କିଛି ଖାଦ୍ୟ ଶସ୍ୟ ଦାନ କରିବେ ।

ଶୃଗାଳସେନ ।। ଆମ୍ଭ ଦେଚରେ ଅନେକ ଖାଦ୍ୟ ଚଚ୍ୟ ଅଛି । ତାହାକୁ ଗୋରୁ ଗାଈ ଖାଆନ୍ତି ଏବଂ ବଳକା ଚଚ୍ୟ ଚମୁଦ୍ରରେ ଫୋପାଡ଼ି ଦିଆଯାଏ ।

ଶୀଳଭଦ୍ର ।। କିନ୍ତୁ ଖରିଦ୍ କରିବା ପାଇଁ ଆମ୍ଭ ଦେଶରେ କ'ଣ ଅଛି ?

ଶୃଗାଳସେନ ।। ହତ୍‌ଚିନାନଗ୍ରରେ କୁଆଡ଼େ ଏକ ପ୍ରାଚୀନ ଚଭ୍ୟତା ଥିଲା । ବର୍ତ୍ତମାନ ଚୁଦ୍ଧା ଚେ ଚଭ୍ୟତାର ଅନେକ ବୁଦ୍ଧି ଆପଣଙ୍କ ଦେଚରେ ମହଜୁଦ୍ ଅଛି ।

ଶୀଳଭଦ୍ର ।। ବୁଦ୍ଧି ? ଆପଣ କେମିତି ଜାଣିଲେ ?

ଶୃଗାଳସେନ ।। କେଉଁ ଦେଚରେ କ'ଣ ମିଳେ ତାହା ଆମ୍ଭେ ଜାଣୁ । ଆମ୍ଭେ ବହୁ ନଗ୍ର, ବହୁ ଗ୍ରାମ, ବହୁ ଚମୁଦ୍ରରେ ଭ୍ରମଣ କରିଅଛୁ ।

ବଜ୍ରବାହୁ ।। ଆମ୍ଭ ଦେଶରେ କ'ଣ ଅଛି ବୋଲି ସୌଦାଗର କହୁଛନ୍ତି ?

ଶୀଳଭଦ୍ର ।। ବୁଦ୍ଧି ।

ବଜ୍ରବାହୁ ।। ତାହା ପୁଣି କି ଦ୍ରବ୍ୟ ?

ଶୀଳଭଦ୍ର ।। 'ବୁଦ୍ଧି' ମଣିମା !

ବଜ୍ରବାହୁ ।। ତାହା ହିଁ ଆମ୍ଭେ ପୁଚ୍ଛା କରୁଅଛୁ । ବୁଦ୍ଧି କେଉଁ ଦ୍ରବ୍ୟ ?

ଶୀଳଭଦ୍ର ।। ଶିକ୍ଷା ଦ୍ୱାରା ବୁଦ୍ଧି ଆସେ । ବୁଦ୍ଧି ଦ୍ୱାରା ବହୁ ଅସାଧ୍ୟ କାର୍ଯ୍ୟ ସଂପାଦନ କରାଯାଇ ପାରେ ।

ବଜ୍ରବାହୁ ।। ଆଚ୍ଛା ? ଏମନ୍ତ କଥା ? ଆମ୍ଭ ଦେଶରେ ତାହା ଅଛି ? ଆମ୍ଭେ ତାହା ଏ ପର୍ଯ୍ୟନ୍ତ ହୃଦୟଙ୍ଗମ କରି ପାରିନଥିଲୁ କିପରି ?

ଶୀଳଭଦ୍ର ।। ଆମ୍ଭ ଦେଶରେ ତାହା ଅନେକ ପରିମାଣରେ ଅଛି ଛାମୁ !

ବଜ୍ରବାହୁ ।। ଆମ୍ଭ ଭଣ୍ଡାର ଘରେ କେତେ ବୁଦ୍ଧି ଅଛି ?

ଶୀଳଭଦ୍ର ।। ବୁଦ୍ଧି ଭଣ୍ଡାର ଘରେ ନଥାଏ ଛାମୁ—ମସ୍ତିଷ୍କ ଭିତରେ ଥାଏ ।

ବଜ୍ରବାହୁ ।। ବେଶ୍ ତେବେ... ଆଜି ଘୋଷକ ଦ୍ୱାରା କଥାଟା ଜଣାଇ ଦିଅ, ଅମାତ୍ୟ—

ଶୀଳଭଦ୍ର ।। କଅଣ ବୋଲି ଜଣାଇବି ଛାମୁ ?

ବଜ୍ରବାହୁ ।। ହସ୍ତିନାନଗ୍ର ସମ୍ରାଟ ବଜ୍ରବାହୁ ଏତଦ୍ଦ୍ୱାରା ଆଦେଶ ଦେଉଅଛନ୍ତି ଯେ ଏ ରାଜ୍ୟରେ ପ୍ରଜାମାନଙ୍କ ଠାରେ ଯେତେ

ପରିମାଣରେ ବୁଦ୍ଧି ଅଛି ସବୁ ଅମାତ୍ୟ ଶୀଳଭଦ୍ରଙ୍କଠାରେ ଜମା ଦେବେ ।

ଶୃଗାଳସେନ ।। ଆମ୍ଭେ କିନ୍ତୁ ଚବୁ ବୁଦ୍ଧି କ୍ରୟ କରିବୁ ନାହିଁ । କାରଣ ବିଭିନ୍ନ ଦେଚରୁ ମସ୍ତିଷ୍କ କିଣି ନେଲାପରେ ଚେଥିରୁ ଅନେକ ଗୋବର ବାହାରିଲା ଏବଂ ଆମ୍ଭ ବ୍ୟବଚାୟ ମାଡ଼ ଖାଇଗଲା ।

ଶୀଳଭଦ୍ର ।। ତା ହେଲେ କେତେ ପରିମାଣରେ ସଂଗ୍ରହ କରିବା ?

ଶୃଗାଳସେନ ।। ଆମ୍ଭେ ଏ ଦେଚରୁ ବାଛି ବାଛି ଉତ୍ତମ ବୁଦ୍ଧି ଆମ୍ଭ ଦେଚକୁ ରପ୍ତାନି କରିବୁ ।

ଶୀଳଭଦ୍ର ।। ଛାମୁ ! ଶୃଗାଳସେନ କେବଳ ଉତ୍ତମ ବୁଦ୍ଧି ଚାହୁଁ ଅଛନ୍ତି ।

ବଜ୍ରବାହୁ ।। ଏ ଦେଶରେ ଉତ୍ତମ ବୁଦ୍ଧି ମାନବ କେତେ ଜଣ ଅଛନ୍ତି ?

ଶୀଳଭଦ୍ର ।। ଛାମୁ ନିଜେ ଥାଉ ଥାଉ ଆଉ କିଏ ଉତ୍ତମ ବୁଦ୍ଧି ଲୋକ ଥିବ, ମୋର ଏ ଆଶା ନାହିଁ ।

ବଜ୍ରବାହୁ ।। ଅବଶ୍ୟ ତାହା ସତ୍ୟ । ଆମ୍ଭେ ସବୁଠାରୁ ବେଶୀ ବୁଦ୍ଧିଥିବା ବ୍ୟକ୍ତି ।

ଶୃଗାଳସେନ ।। ଚେଥିପାଇଁ ଆମ୍ଭେ ଆପଣଙ୍କ ବୁଦ୍ଧି କିଣିବୁ ନାହିଁ । କାରଣ ଆପଣ ଏ ଦେଚର ରାଜା । ଆପଣଙ୍କ ବୁଦ୍ଧି ନେଇଗଲେ ଏ ରାଜ୍ୟ ଚଳିବ କେମିତି ?

ଶୀଳଭଦ୍ର ।। ଆପଣ ତା ହେଲେ ହସ୍ତିନା ରାଜ୍ୟ ପରିଭ୍ରମଣ କରି ବୁଦ୍ଧିମାନ ମାନବ ଅନ୍ୱେଷଣ କରନ୍ତୁ ।

ବଜ୍ରବାହୁ ।। ପ୍ରତ୍ୟେକ ବୁଦ୍ଧିର ମୂଲ୍ୟ କେତେ ?

ଶୃଗାଳସେନ ।। ଯିଏ ଯାହା ଅର୍ଥ ମାଗିବ ତାକୁ ତାହା ଦିଆଯିବ ।

ବଜ୍ରବାହୁ ।। ସେ ଅର୍ଥ ଆମ୍ଭ ରାଜକୋଷକୁ ଆସିବ । ଅମାତ୍ୟ ! ସେନାଧ୍ୟକ୍ଷଙ୍କୁ ପଠାଇ ଏ ରାଜ୍ୟରୁ ସବୁ ବୁଦ୍ଧି ନେଇ ଆସ ।

ଶୀଳଭଦ୍ର ।। ଯଥା ଆଜ୍ଞା ପ୍ରଭୁ !

ବଜ୍ରବାହୁ ।। ହସ୍ତିନାପୁରରେ ଯଦି ଗୋଟିଏ ବୁଦ୍ଧିମାନ୍ ଲୋକ ରହେ— ତେବେ ଆସି ଶ୍ରୀ ଛାମୁରେ ଖବର ଦେଲେ ଆମ୍ଭେ ତାହାର ଶୂଳିଦଣ୍ଡ ଆଦେଶ କରିବୁ ।

ଶୀଳଭଦ୍ର ।। କିନ୍ତୁ ସୌଦାଗର ଶୃଗାଳସେନ; ଉତ୍ତମ ବୁଦ୍ଧି ଚୟନ କରିବା ଦାୟିତ୍ୱ ଆପଣଙ୍କର ।

ଶୃଗାଳସେନ ।। ଅଚେଚ ଧନ୍ୟବାଦ । ଆପଣଙ୍କ ନିବ୍ୱପତିରେ ଆମ୍ଭେ ଖୁଚି ହୋଇଅଛୁ ।

ବଜ୍ରବାହୁ ।। ମୂଲ୍ୟ

ଶୃଗାଳସେନ ।। ପ୍ରଦିଦାନରେ ଆମ୍ଭେ ଆମ ଦେଚ ତରଫରୁ ଆପଣଙ୍କୁ ନୂତନ ଚୂର୍ଯ୍ୟ ଗୋଟିଏ ଦାନ କରିବୁ ।

ବଜ୍ରବାହୁ ।। ଅମାତ୍ୟ ! ସୌଦାଗର କ'ଣ କହୁଛନ୍ତି ?

ଶୀଳଭଦ୍ର ।। ସେ ଆମ ଦେଶ ପାଇଁ ଗୋଟିଏ ନୂଆ ସୂର୍ଯ୍ୟ ଦେବେ । ଏଇ ପୁରୁଣା ସୂର୍ଯ୍ୟଟାରୁ ଆଉ ଭଲ ଆଲୁଅ ବାହାରୁ ନାହିଁ ।

ବଜ୍ରବାହୁ ।। ସାଧୁ ! ଉତ୍ତମ !

ଶୃଗାଳସେନ ।। ବୁଦ୍ଧି ଖୋଜିବା ପାଇଁ ଅନେକ ଚମୟ ଲାଗିବ । ଚମ୍ରାଟଙ୍କ ଅନୁମତି ହେଲେ ଆମ୍ଭେ ଯାଇ ବୁଦ୍ଧି ଅନ୍ବେଚଣ କରିବୁ !

ବଜ୍ରବାହୁ ।। ଆଦେଶ ଦିଆଗଲା ।

[ଶୃଗାଳସେନଙ୍କ ପ୍ରସ୍ଥାନ]

ବଜ୍ରବାହୁ ।। ସୂର୍ଯ୍ୟ ! ଏକ ନୂତନ ସୂର୍ଯ୍ୟ !

ଶୀଳଭଦ୍ର ।। କିନ୍ତୁ ଛାମ୍ନା, ଆଉ ଗୋଟିଏ ସମସ୍ୟା । ଏ ବର୍ଷର ଅନାବୃଷ୍ଟି ଓ ଅତି ବୃଷ୍ଟି ଯୋଗୁଁ ରାଜ୍ୟସାରା ମରୁଡ଼ି ପଡ଼ିଅଛି ।

ବଜ୍ରବାହୁ ।। ମରୁଡ଼ିକୁ ଆମ୍ଭ ଆଦେଶ ଜଣାଇ ଦିଅ । ଆଉ ହସ୍ତିନା ସାମ୍ରାଜ୍ୟକୁ ଆସିବା ପାଇଁ କୌଣସି ବ୍ୟବସ୍ଥା କରାଯାଇ ପାରିବ ନାହିଁ ।

ଶୀଳଭଦ୍ର ।। ମରୁଡ଼ି ମନକୁ ମନ ଆସିଯାଇଛି । ବହୁ ଲୋକ ଅନାହାରରେ ମୃତ ବୋଲି ସମ୍ବାଦ ପହଞ୍ଚିଛି ।

ବଜ୍ରବାହୁ ।। ଆଶ୍ଚର୍ଯ୍ୟ । ପ୍ରଜାମାନେ ଏମିତି ହଠାତ୍ ମଲେ କାହିଁକି ?

ଶୀଳଭଦ୍ର ।। ସମସ୍ତେ ଅନାହାରରେ ।

ବଜ୍ରବାହୁ ।। (କ୍ରୁଦ୍ଧ) କାହିଁକି ମଲେ ? କାହା ଆଦେଶରେ ମଲେ ?

ଶୀଳଭଦ୍ର ।। ସେ ରହସ୍ୟ ଆମ୍ଭଙ୍କୁ ଅଗୋଚର ପ୍ରଭୁ !

ବଜ୍ରବାହୁ ।। ଆମ୍ଭେ ସମ୍ରାଟ ବଜ୍ରବାହୁ ଏ ସମ୍ବାଦ ଶୁଣି କ୍ରୁଦ୍ଧ ହୋଇଅଛୁ ।

ଶୀଳଭଦ୍ର ।। ସବୁ ସ୍ଥାନରେ ଅନାହାର ମୃତ୍ୟୁ । ଗୌଡ଼ଦେଶ, ଉତ୍ତରଦେଶ ଏବଂ କର୍ଣ୍ଣାଟ ଦେଶ ବିଶେଷ ପ୍ରପୀଡ଼ିତ । ଗ୍ରାମେ ଗ୍ରାମେ, ନଗ୍ରେ ନଗ୍ରେ ଦୁର୍ଭିକ୍ଷର କରାଳ ତାଣ୍ଡବ । ଏପରିକି ସିଂହଦ୍ୱାର ସମ୍ମୁଖରେ ମଧ୍ୟ ମୃତ ପ୍ରଜାଙ୍କର ଶବ ପଡ଼ିଅଛି ।

ବଜ୍ରବାହୁ ।। ସମସ୍ତ ମୃତ ବ୍ୟକ୍ତିଙ୍କର ଆଜି ଆମ୍ଭ ନ୍ୟାୟାଳୟରେ ବିଚାର କରାଯିବ । ସେମାନଙ୍କୁ ଏଠାକୁ ଆନୀତ କରାଅ ।

ଶୀଳଭଦ୍ର ।। ଅସମ୍ଭବ ପ୍ରଭୁ ! ମୃତ ବ୍ୟକ୍ତିମାନେ ଏଠାକୁ କିପରି ଆସିବେ ?

ବଜ୍ରବାହୁ ।। ସେମାନେ ଆସିବା ପାଇଁ ବାଧ୍ୟ । ଏହା ସମ୍ରାଟ ବଜ୍ରବାହୁଙ୍କ ଆଦେଶ । ଆମ୍ଭେ ସେହି ମୃତ ବ୍ୟକ୍ତିମାନଙ୍କ ପ୍ରତିନିଧିଙ୍କୁ ଭେଟିବା ପାଇଁ ଚାହୁଁଅଛୁଁ । ଶୀଘ୍ର ଜଣେ ମୃତ ବ୍ୟକ୍ତିଙ୍କୁ ଏଠାକୁ ଆନୟନ କର ।

ଶୀଳଭଦ୍ର ।। ଦୂତ ! ଶୀଘ୍ର ଯାଇ ଜଣେ ମୃତ ବ୍ୟକ୍ତିଙ୍କୁ ସିଂହଦ୍ୱାର ସମ୍ମୁଖରୁ ଉଠାଇଆଣ ।

ବଜ୍ରବାହୁ ।। (ହାଣ୍ଡିରେ ଗୋଡ଼ ପକାଇ, ହସି ହସି) ଆମ୍ଭେ ପ୍ରବଳ ପରାକ୍ରମୀ ସମ୍ରାଟ ବଜ୍ରବାହୁ । ଆମ୍ଭ ରାଜ୍ୟରେ ସୁଶାସନ ଚାଲିଅଛି...ହା–ହା–ହା–ହା–ହା...

[ଦୂତ ଜଣେ ମୃତ ବ୍ୟକ୍ତିଙ୍କୁ ଟେକି ଟେକି ନ୍ୟାୟାଳୟରେ ହାଜିର କରାଇଛି ।]

ବଜ୍ରବାହୁ ।। ତୁମ୍ଭେ ସେହି କୁତ୍ସିତ ମାନବ ?

ମୃତବ୍ୟକ୍ତି ।। ମୁଁ ତ କିଛି ବୁଝି ପାରୁନାହିଁ !

ବଜ୍ରବାହୁ ।। ଆମ୍ଭେ ପୁଚ୍ଛା କରୁଅଛୁଁ ତୁମ୍ଭେ ସେହି ମୃତ ବ୍ୟକ୍ତି ?

ମୃତବ୍ୟକ୍ତି ।। ହଁ, କିନ୍ତୁ ତୁମ୍ଭଙ୍କୁ ମୁଁ ଚିହ୍ନି ପାରୁନାହିଁ ।

ବଜ୍ରବାହୁ ।। ଅମାତ୍ୟ ! ଏହା ଅତି ଆଚମ୍ବିତ କଥା । ହସ୍ତିନା ନଗ୍ରର ପ୍ରବଳ ପରାକ୍ରମୀ ସମ୍ରାଟ ବଜ୍ରବାହୁଙ୍କୁ ଏହି ମୃତବ୍ୟକ୍ତି କିପରି ଚିହ୍ନି ନାହିଁ ?

ଶୀଳଭଦ୍ର ।। ମୃତ ବ୍ୟକ୍ତିମାନଙ୍କର ମତିଭ୍ରମ ହୋଇଥାଇପାରେ । କିମ୍ବା ସ୍ମୃତିଶକ୍ତି ଲୋପ ପାଇଯାଇ ପାରିଥାଏ ।

ବଜ୍ରବାହୁ ।। ଏହା କ'ଣ ସତ୍ୟ ?

ମୃତବ୍ୟକ୍ତି ।। ତମେ କିଏ ? ମତେ ଏଠାକୁ କାହିଁକି ଅଣାଯାଇଅଛି ? ଏହା ଇନ୍ଦ୍ରଙ୍କ ଦରବାର ନା ଯମ ରାଜାଙ୍କର ?

ବଜ୍ରବାହୁ ।। ଅମାତ୍ୟ ! ଏ ମୃତ ବ୍ୟକ୍ତି କି ଭାଷା କହୁଅଛି ?

ଶୀଳଭଦ୍ର ।। ମଣିମା ! ଏ ମୃତ ବ୍ୟକ୍ତି ପଚାରୁଅଛି ଏହା ସ୍ୱର୍ଗ ନା ମର୍ତ୍ତ୍ୟ ?

ବଜ୍ରବାହୁ ।। ଏହା ହସ୍ତିନାନଗ୍ରର ଅଧିପତି ସମ୍ରାଟ ବଜ୍ରବାହୁଙ୍କର ନ୍ୟାୟାଳୟ ।

ମୃତବ୍ୟକ୍ତି ।। ଆମ୍ଭେ ମୃତ ହେଲା ପରେ କାହାର ପ୍ରଜା ନୋହୁଁ ।

ବଜ୍ରବାହୁ ।। ଆମ୍ଭେ ପୁଚ୍ଛା କରୁଅଛୁଁ ତୁମେ ଜୀବିତ ଥିବା ଅବସ୍ଥାରେ ତୁମ୍ଭର ଅନାହାର ମୃତ୍ୟୁ ହୋଇଅଛି କି ନାହିଁ ?

ମୃତବ୍ୟକ୍ତି ।। ଅନେକ ଦିନ ପର୍ଯ୍ୟନ୍ତ ଆମକୁ ଆହାର ମିଳି ନଥିଲା । କିଛି ଦିନ ଆମେ ପେଜ ପିଇ କାଳ ଯାପନ କଲୁ । ତା'ପରେ ଚାକୁଣ୍ଡା ପତ୍ର ଶିଝାଇ ଖାଇଲୁ । କିନ୍ତୁ ହସ୍ତିନା ରାଜ୍ୟରେ ଚାକୁଣ୍ଡା ଶାଗ ମଧ ନ ମିଳନ୍ତେ ଆମ୍ଭେ ବଜାର ରାସ୍ତାରେ କୁକୁରମାନଙ୍କ ସାଙ୍ଗରେ ଖଲି ପତ୍ର ଚାଟିବା ଆରମ୍ଭ କଲୁ । ଦିନେ ଦେଖିବାକୁ ମିଳିଲା କୁକୁରମାନେ ସବୁ ଉଚ୍ଛିଷ୍ଟ ଆହାର କରି ଦେଇଛନ୍ତି ଏବଂ ସେହି ଦିନ ସିଂହଦ୍ୱାର ସମ୍ମୁଖରେ କ୍ଷୁଧାର ଜ୍ୱାଳା ସହ୍ୟ କରି ନ ପାରି ଆମ୍ଭେ ପ୍ରାଣତ୍ୟାଗ କଲୁଁ ।

ବଜ୍ରବାହୁ ।। କାହିଁକି ପ୍ରାଣତ୍ୟାଗ କଲ ? ଏହା ଏକ ଗୁରୁତର ଅପରାଧ ।

ଶୀଳଭଦ୍ର ।। ଅତି ଗୁରୁତର ମଣିମା !

ବଜ୍ରବାହୁ ।। ବର୍ତ୍ତମାନ ଆମ୍ଭ ସାମ୍ରାଜ୍ୟରେ ରଜତଜୟନ୍ତୀ ପାଳିତ ହେଉଅଛି । ସମଗ୍ର ହସ୍ତିନାରେ ଏହା ସୁବର୍ଣ୍ଣ ଯୁଗ ଅଟଇ ।

ମୃତବ୍ୟକ୍ତି ।। କିନ୍ତୁ ଖାଦ୍ୟ ଅଭାବରୁ ମୋର ମୃତ୍ୟୁ ହୋଇଅଛି ।

ବଜ୍ରବାହୁ ।। ଏ ପ୍ରଳାପ ବନ୍ଦ କର ।

ମୃତବ୍ୟକ୍ତି ।। ମୁଁ ବର୍ତ୍ତମାନ ମୃତ । ସତ୍ୟ କଥା କହିବା ପାଇଁ ଆଉ କୁଣ୍ଠା ନାହିଁ ।

ବଜ୍ରବାହୁ ।। ଆମ୍ଭେ ତୁମ୍ଭର ଧୃଷ୍ଟତା ଦେଖି କ୍ରୁଦ୍ଧ ହୋଇଅଛୁ । ଦୂତ ! ଏହାକୁ ଶୂଳି ଦିଅ ।

ମୃତବ୍ୟକ୍ତି ।। ଦିଅ ! ଆଉ କ'ଣ କ'ଣ ଦଣ୍ଡ ଅଛି ଦିଅ । ମୁଁ କେଉଁ ସମ୍ରାଟଙ୍କୁ ଭ୍ରୂକ୍ଷେପ କରେ ନାହିଁ । ତମେ ସବୁ ଗୋଟାଏ ଗୋଟାଏ ସ୍ୱାର୍ଥପର ପଶୁ ! କୁକ୍କୁର । ମାଟି ହାଣ୍ଡି ଭିତରେ କ୍ଷମତାକୁ ଧରି ରଖିବା ପାଇଁ ଆପ୍ରାଣ ଚେଷ୍ଟା କରୁଛ । କିନ୍ତୁ ମନେରଖ ମୂର୍ଖ ସମ୍ରାଟ ! ଏଇ କ୍ଷମତାର ମାଟି

ହାଣ୍ଡି ଯେତେବେଳେ ଫାଟିଯିବ, ତୁମେ ମଧ୍ୟ ଆମ ଗୋଷ୍ଠୀରେ ଯୋଗଦେବ, ଆଉ ସେତେବେଳେ ମୋ ଭଳି କ୍ଷୁଧାର୍ତ୍ତ ପ୍ରଜାଗଣ ତମକୁ ଉଚିତ ଶାସ୍ତି ଦେବେ ।

ବଜ୍ରବାହୁ ।। (କ୍ରୁଦ୍ଧ ହୋଇ) ଦୂତ ! ଏହାକୁ ଶୂଳି ଦିଅ । ଦୁଇଥର ଶୂଳୀ ଦିଅ ।

ମୃତବ୍ୟକ୍ତି ।। ବେଶ୍ । ମୁଁ ଯାଉଛି । କିନ୍ତୁ ମନେରଖ ମୂର୍ଖ ସମ୍ରାଟ ! ଏ ଅନ୍ଧାରୀ ମୂଲକର ରାତି ପାହି ଆସୁଛି । ମୋରି ପରି ଅଗଣିତ ଅନାହାରକ୍ଲିଷ୍ଟ ମୃତବ୍ୟକ୍ତିମାନଙ୍କର ଭୂତ ତମକୁ ଟିକି ଟିକି କରି ଚିରି ଖାଇଯିବେ । ଟିକି ଟିକି କରି ଖାଇଯିବେ । (ଦୂତ ମୃତବ୍ୟକ୍ତିକୁ ନେଇଯାଇଛି)

ଶୀଳଭଦ୍ର ।। ମୁଁ ଦେଖୁଛି ଏ ସାମ୍ରାଜ୍ୟରେ ଭୂତ ପ୍ରେତମାନେ ମଧ୍ୟ ବିପ୍ଳବ କଲେଣି ।

ବଜ୍ରବାହୁ ।। କିନ୍ତୁ ଆମ୍ଭେ ସମ୍ରାଟ ବଜ୍ରବାହୁ ଗୋଟିଏ କଥା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲୁ ।

ଶୀଳଭଦ୍ର ।। ତା କ'ଣ ମଣିମା ?

ବଜ୍ରବାହୁ ।। ଏହି ମୃତବ୍ୟକ୍ତି ତାହାର କ୍ଲେଶ ବର୍ଣ୍ଣନା କରୁଥିବା ସମୟରେ ଏପରି ଚିତ୍କାର କରୁଥିଲା କାହିଁକି ? ଚିତ୍କାର କରିବା ସଙ୍ଗେ ସଙ୍ଗେ ତାହାର ନାସିକା ଫୁଲି ଉଠୁଥିଲା କାହିଁକି ?

ଶୀଳଭଦ୍ର ।। ମୃତବ୍ୟକ୍ତିଙ୍କ ହୃଦୟ ଆଲୋଡ଼ିତ ହେଉଥିଲା ।

ବଜ୍ରବାହୁ ।। ହୃଦୟ ? ତା ପୁଣି କ'ଣ ?

ଶୀଳଭଦ୍ର ।। ତାହା ଏକ ବସ୍ତୁ । ତଦ୍ୱାରା ରାଗ, ଘୃଣା, ପ୍ରେମ, ଭକ୍ତି ସ୍ନେହ ଇତ୍ୟାଦି ସଞ୍ଚାରିତ ହୁଏ ।

ବଜ୍ରବାହୁ ।। ସତେ ! ପୃଥିବୀରେ ହୃଦୟ ନାମକ ଏହି ଆଶ୍ଚର୍ଯ୍ୟ ଦ୍ରବ୍ୟ ଅଛି ବୋଲି ଆମ୍ଭେ ତ ଜାଣି ନଥିଲୁ ? ସୁନ୍ଦର ! ଅତି ସୁନ୍ଦର !

ଶୀଳଭଦ୍ର ।। ଏହାଦ୍ୱାରା ଆପଣ ହସି ପାରନ୍ତି, କାନ୍ଦି ପାରନ୍ତି ଏବଂ ପ୍ରେମ କରି ପାରନ୍ତି ମଧ୍ୟ ।

ବଜ୍ରବାହୁ ।। ଆଶ୍ଚର୍ଯ୍ୟ ! ଆଚ୍ଛା ଅମାତ୍ୟ, ଆମ୍ଭ ରାଜଭଣ୍ଡାରରେ ହୃଦୟ ନାମକ ଦ୍ରବ୍ୟ କେତେ ପରିମାଣରେ ଅଛି ?

ଶୀଳଭଦ୍ର ॥ କ୍ଷମା କରିବେ ମଣିମା ! ହୃଦୟ ଆମ୍ଭ ରାଜକୋଷରେ ନାହିଁ । କିନ୍ତୁ ସେଥିରୁ ଗୋଟିଏ ଗୋଟିଏ ଏ ରାଜ୍ୟର ପ୍ରତି ମାନବଙ୍କ ପାଖରେ ଅଛି ବୋଲି ଆମ୍ଭର ବିଶ୍ୱାସ ।

ବଜ୍ରବାହୁ ॥ ଆମ୍ଭ ପାଖରେ ଯେତେବେଳେ ହୃଦୟ ନାମକ ବସ୍ତୁ ନାହିଁ, ଏ ରାଜ୍ୟରେ କାହା ପାଖରେ କାହିଁକି ରହିବ ? ଆମ୍ଭେ ଏତଦ୍ଦ୍ୱାରା ଆଦେଶ କରୁଅଛୁ ଯେ ଜନତା ହୃଦୟକୁ ନିଜ ପାଖରେ ସଞ୍ଚୟ ନ କରି ଜାତୀୟ ପାଣ୍ଠିକୁ ଦାନ କରି ଦେଶକୁ ସାହାଯ୍ୟ କରନ୍ତୁ ।

ଶୀଳଭଦ୍ର ॥ ଘୋଷକଙ୍କୁ ଜଣାଇ ଦେବି ଛାମୁ ! କିନ୍ତୁ ଛାମୁ, ଦେଶରେ ଆଉ ଏକ ସମସ୍ୟା ଉକ୍ରଟ ହେଲାଣି ।

ବଜ୍ରବାହୁ ॥ ବ୍ୟାଖ୍ୟା କର ।

ଶୀଳଭଦ୍ର ॥ ଗୁରୁକୁଳ ଆଶ୍ରମଗୁଡ଼ିକୁ ଆଗାମୀ ୧୫ ବର୍ଷ ପର୍ଯ୍ୟନ୍ତ ବନ୍ଦ କରିଦେଇ ଅବଶ୍ୟ ଆପଣ ଏକ ସାଧୁକାର୍ଯ୍ୟ ସଂପାଦନ କରିଅଛନ୍ତି ।

ବଜ୍ରବାହୁ ॥ କେଉଁପରି...

ଶୀଳଭଦ୍ର ॥ ଏତଦ୍ଦ୍ୱାରା ଦେଶରେ ଶିକ୍ଷିତ ସଂଖ୍ୟା ବୃଦ୍ଧି ପାଇବ ନାହିଁ ଏବଂ ସେମାନେ କର୍ମ ସଂସ୍ଥାନ ପାଇଁ ରାଜଦ୍ରୋହୀ ହେବେ ନାହିଁ ।

ବଜ୍ରବାହୁ ॥ ମୂର୍ଖୁଁ ମାଇଲେ ଯିବ ସରି ।

ଶୀଳଭଦ୍ର ॥ କିନ୍ତୁ ଛାମୁ ! ଶିକ୍ଷାଶ୍ରମରୁ ହଠାତ୍ ବାହାରିଥିବା ଶିଷ୍ୟମାନେ ଆକାଶଛାତ ଯୋଜନାରେ କାମ କରିବା ପାଇଁ ଆଗ୍ରହ ଦେଖାଉ ନାହାନ୍ତି । ଏତେ ପାଠପଢ଼ି ଏପରି ମୂଲିଆ କାର୍ଯ୍ୟ ପ୍ରତି ତାଙ୍କର ଆଗ୍ରହ ନାହିଁ ।

ବଜ୍ରବାହୁ ॥ ଋଷିପୁତ୍ରମାନେ କ'ଣ କାର୍ଯ୍ୟ ଛାଡ଼ିଦେଲେ ?

ଶୀଳଭଦ୍ର ॥ ଖାଲି ସେତିକି ନୁହେଁ ମଣିମା ! ସେମାନେ ନିଜକୁ ରାଜଦ୍ରୋହୀ ବୋଲି ନିଷତ୍ତି କରି ବିକ୍ଷୋଭ ପ୍ରଦର୍ଶନ କରୁଅଛନ୍ତି ।

ବଜ୍ରବାହୁ ॥ ଯଥା ?

ଶୀଳଭଦ୍ର ॥ ଅଶ୍ୱଶାଳାରେ ଅଗ୍ନି ସଂଯୋଗ କରିଦେଲେ । ଦେଢ଼ଶହ ଅଶ୍ୱ ଅର୍ଦ୍ଧମୃତ ହୋଇ ଛଟପଟ ହେଉଅଛନ୍ତି ।

ବଜ୍ରବାହୁ ।। ଆଉ କିଛି ?

ଶୀଳଭଦ୍ର ।। ଦୁଇଜଣ ରାଜସ୍ୱ ପ୍ରତିନିଧିଙ୍କୁ ଚୋରକରି ସ୍ପଷ୍ଟ ଦିବାଲୋକରେ ଶୂଳି ଦେଇଅଛନ୍ତି ।

ବଜ୍ରବାହୁ ।। କାହିଁକି ?

ଶୀଳଭଦ୍ର ।। ସେମାନେ କର୍ମ ସଂସ୍ଥାନ ବେଳେ ପ୍ରିୟାପ୍ରୀତି କଲେ ।

ବଜ୍ରବାହୁ ।। ଏହାର ସମାଧାନ କିପରି ହେବ ?

ଶୀଳଭଦ୍ର ।। ଛାମୁଙ୍କର ଏଥିରେ କରିବା ପାଇଁ କିଛି ନାହିଁ । ଯେ ଯେମନ୍ତ କର୍ମ କରିଅଛି ସେ ସେମନ୍ତ ଫଳ ପାଇଅଛି ।

ବଜ୍ରବାହୁ ।। ସାଧୁ ! ସାଧୁ ! ସାଧୁ ! ଆମ୍ଭର କିନ୍ତୁ ଏ ସଂପର୍କରେ କିଛିଟା ଚିନ୍ତା କରିବା ଉଚିତ । ଯେହେତୁ ଆମ୍ଭେ ପ୍ରଜାବତ୍ସଳ ରାଜା । ଆମ୍ଭେ ସମାଜବାଦରେ ଗଭୀର ବିଶ୍ୱାସ ରଖିଅଛୁ । ତେଣୁ ସମ୍ରାଟ ବଜ୍ରବାହୁ ଏତଦ୍ୱାରା ଘୋଷଣା କରୁଅଛନ୍ତି ଯେ ଆଜିଠାରୁ ହସ୍ତିନା ସାମ୍ରାଜ୍ୟରେ ସମସ୍ତଙ୍କ ପାଇଁ କର୍ମ ଯୋଗାଣ କରିଦିଆଗଲା ଏବଂ କାଲିଠାରୁ ଯେଉଁ ଅଞ୍ଚଳରେ ସୁବର୍ଣ୍ଣଯୁଗ ଆରମ୍ଭ ହୋଇ ନଥିଲା ତାହା ଆରମ୍ଭ ହୋଇଗଲା । ଆଚ୍ଛା ! ଅମାତ୍ୟ ବ୍ରହ୍ମଦତ୍ତଙ୍କ ଦର୍ଶନ ନାହିଁ ଯେ ?

ଶୀଳଭଦ୍ର ।। ଅମାତ୍ୟ ବ୍ରହ୍ମଦତ୍ତ ପ୍ରକୃତିସ୍ଥ ନୁହନ୍ତି ଛାମୁ !

ବଜ୍ରବାହୁ ।। ଅର୍ଥାତ୍ ?

ଶୀଳଭଦ୍ର ।। ବ୍ରହ୍ମଦତ୍ତ ରାଜଦ୍ରୋହୀ । ବିଶ୍ୱାସଘାତକ ।

ବଜ୍ରବାହୁ ।। ଅମାତ୍ୟ !

ଶୀଳଭଦ୍ର ।। ଏହା ସତ୍ୟ ଅଟେ ଛାମୁ । ଅଳ୍ପ ସମୟ ପୂର୍ବେ ତାଙ୍କ ସହ ମୋର ଦେଖା ହୋଇଥିଲା.... ଏବଂ....

ବଜ୍ରବାହୁ ।। ଏହା କେମନ୍ତେ ସମ୍ଭବ ହେଲା ?

ଶୀଳଭଦ୍ର ।। ବ୍ରହ୍ମଦତ୍ତ ରାଜଦ୍ରୋହୀ । ସେ ଗୁରୁକୁଳ ଆଶ୍ରମର ଶିଷ୍ୟମାନଙ୍କୁ ଉତ୍ତେଜିତ କରାଇଅଛନ୍ତି । ବର୍ତ୍ତମାନ ରାଜ୍ୟରେ ବିପ୍ଳବର ଅଗ୍ନି ଜଳୁଛି ମଣିମା !

ବଜ୍ରବାହୁ ।। ଆମ୍ଭ ବିପକ୍ଷରେ ସ୍ୱର ଉତ୍ତୋଳନ କରିବା ପାଇଁ ଏ ରାଜ୍ୟରେ କେହି ଜନ୍ମ ହୋଇ ନାହାନ୍ତି ।

ବ୍ରହ୍ମଦତ୍ତ ।। (ହଠାତ୍ ପ୍ରବେଶ କରି) ମୁଁ ଜନ୍ମ ହୋଇଛି । ମୁଁ ବ୍ରହ୍ମଦତ୍ତ ଏହି ଅନ୍ଧାରୀ ଶାସନ ଭାଙ୍ଗିବି ।

ବଜ୍ରବାହୁ ॥ ଅମାତ୍ୟ ବ୍ରହ୍ମଦତ୍ତ !

ବ୍ରହ୍ମଦତ୍ତ ॥ ଆପଣ ନିର୍ବୋଧ ସମ୍ରାଟ, ଆପଣ ସ୍ୱାର୍ଥପର ସମ୍ରାଟ ।

ଶୀଳଭଦ୍ର ॥ ବ୍ରହ୍ମଦତ୍ତ !

ବ୍ରହ୍ମଦତ୍ତ ॥ ଆଜି ମୁଁ ଏଠାରେ ସହୀଦ ହେବା ପାଇଁ ଆସିଛି । ଚିତ୍କାର କରି ତୁମେ ବିପ୍ଳବର ଧ୍ୱନି ବନ୍ଦ କରିପାରିବ ନାହିଁ ।

ଶୀଳଭଦ୍ର ॥ ମୁଁ ତୁମକୁ ଶୂଳି ଦଣ୍ଡ ଦେବି ! ମଣିମା ?

ବଜ୍ରବାହୁ ॥ ବ୍ରହ୍ମଦତ୍ତକୁ ଶୂଳି ଦିଅ ।

ବ୍ରହ୍ମଦତ୍ତ ॥ ହାଃ, ହାଃ, ହାଃ, କେତେଦିନ ? କେତେଜଣ ଅମାତ୍ୟଙ୍କୁ ଶୂଳି ଦେଇ ଏ ରାଜ୍ୟ ଶାସିତ ହେବ ? ସମ୍ରାଟ ! ଆପଣଙ୍କ ଆଦେଶରେ ହସ୍ତିନାପୁର ସାମ୍ରାଜ୍ୟର ଜନତାମାନଙ୍କ ହୃଦୟକୁ କାଟି ଦିଆଯାଇଛି । ବୁଦ୍ଧି ବିକ୍ରି କରି ଦିଆଯାଇଛି । ଗୁରୁକୁଳ ଆଶ୍ରମର ଋଷିମାନଙ୍କୁ ଇଟା ପଥର ବୋହିବାକୁ ପଡୁଛି । ଶିକ୍ଷାଶ୍ରମରେ ଆସନ୍ତା ପନ୍ଦର ବର୍ଷ ପାଇଁ ତାଲା ବନ୍ଦ ।

ବଜ୍ରବାହୁ ॥ ତାହା ଆମ୍ଭର ଇଚ୍ଛା । ନରବିଷ୍ଣୁ ସମ୍ରାଟ ବଜ୍ରବାହୁଙ୍କର ଇଚ୍ଛା ।

ବ୍ରହ୍ମଦତ୍ତ ॥ ଗୋଟାଏ ନରବିଷ୍ଣୁର ଇଚ୍ଛାରେ କୋଟି କୋଟି ଜନତାର ଭବିଷ୍ୟତ ନିୟନ୍ତ୍ରିତ ହୋଇପାରେନା ସମ୍ରାଟ ? ଆପଣଙ୍କ ଶକ୍ତିର ଏଇ ମୃତ୍ତିକାଭାଣ୍ଡ ଆଜି ଭାଙ୍ଗିଯିବ ।

ବଜ୍ରବାହୁ ॥ ବ୍ରହ୍ମଦତ୍ତ !!

ବ୍ରହ୍ମଦତ୍ତ ॥ ଆଉ କେତେଦିନ ? ଆଉ କେତେ ଦିନ ଏଇ ସାମ୍ରାଜ୍ୟରେ ଅନାହାରକ୍ଲିଷ୍ଟ ମଣିଷ ଆପଣଙ୍କୁ ପୂଜା କରିବେ ? ସ୍ନେହ, ପ୍ରେମ ଓ କରୁଣାର ଅଭାବରେ–ବୁଦ୍ଧି, ଜ୍ଞାନ ଓ ଚିନ୍ତା ଶକ୍ତିର ଅଭାବରେ କେତେଦିନ ଏ ଅନ୍ଧାରୀ ଶାସନ ଚାଲିବ ?

ବଜ୍ରବାହୁ ॥ ସୁବର୍ଣ୍ଣଯୁଗ ଚାଲିଅଛି । ଖାଦ୍ୟ ସଙ୍କଟର ସମାଧାନ ହୋଇଯାଇଛି ।

ବ୍ରହ୍ମଦତ୍ତ ॥ ଖାଲି ଆଦେଶ କଲେ ସମସ୍ୟାର ସମାଧାନ ହୋଇଯାଏନା । ଏ ରାଜ୍ୟରେ ନିଷ୍ଠା କାହିଁ ? ଆପଣ ଓ ଆପଣଙ୍କର ଏ ଦୁର୍ନୀତିଗ୍ରସ୍ତ ଅମାତ୍ୟମାନଙ୍କ ଯୋଗୁଁ ଆଜି

ଦେଶରେ ଏ ଅବସ୍ଥା । ତଥାପି ଆପଣ କ'ଣ ଭାବୁଛନ୍ତି ହସ୍ତିନାପୁର ସାମ୍ରାଜ୍ୟରେ ସୁବର୍ଣ୍ଣଯୁଗ ଚାଲିଅଛି ?

ବଜ୍ରବାହୁ ।। ବନ୍ଦୀ କର ଏହାଙ୍କୁ । (ବନ୍ଦୀ କରିବା ପାଇଁ କେହି ଆସିଲେ ନାହିଁ । ତେଣୁ ଚିତ୍କାର କରି) ବନ୍ଦୀ କର ରାଜଦ୍ରୋହୀ ବ୍ରହ୍ମଦତ୍ତଙ୍କୁ । ପ୍ରହରି !

ଶୀଳଭଦ୍ର ।। ଦୂତ ! ପ୍ରହରୀ, ପ୍ରହରୀ ! (ଭିତରକୁ ଗଲେ ଓ ନିଜେ ବନ୍ଦୀ ହୋଇଗଲେ) ଓଃ ! ଛାଡ଼ ମୋତେ ! ଛାଡ଼ ମୋତେ ! ବିଶ୍ୱାସଘାତକ ! କୁକ୍କୁର !

ବ୍ରହ୍ମଦତ୍ତ ।। ଏ ପ୍ରାସାଦର ସମସ୍ତ ଅନୁଚର ମଧ୍ୟ ବିଦ୍ରୋହୀ ସମ୍ରାଟ ! ବୃକ୍ଷଲତା, ପଶୁପକ୍ଷୀ, ସମସ୍ତେ ଚାହାନ୍ତି ଆପଣଙ୍କର ମୃତ୍ୟୁ । ଏ ସ୍ୱେଚ୍ଛାଚାରୀ ଶକ୍ତିର ବିନାଶ । ଏ ଏକଛତ୍ରବାଦର ମୃତ୍ୟୁ । (ମାଟିହାଣ୍ଡି ଭାଙ୍ଗିଦେଲେ । ବଜ୍ରାଘାତ ପରି) ହାଃ–ହାଃ–ହାଃ ।

ବଜ୍ରବାହୁ ।। (ମୁମୂର୍ଷୁ ଭାବରେ ଚିତ୍କାର କଲାଭଳି) ବ୍ରହ୍ମଦତ୍ତ ! ଓଃ, କି ଯନ୍ତ୍ରଣା... ଏଇ–ମୋ ଆଖି ଆଗରେ ଏତେବଡ଼ ଶକ୍ତିର ମୃତ୍ତିକାଭାଣ୍ଡଟା ଫାଟିଗଲା ? ଓଃ କି ଯନ୍ତ୍ରଣା ! (ବାହାରୁ ଖୁବ୍ ଉତ୍ତେଜନାର ପାଟିତୁଣ୍ଡ ଶୁଭୁଛି, ବାଜା ବାଜୁଛି, ଢୋଲ ବାଜୁଛି)

ବ୍ରହ୍ମଦତ୍ତ ।। ସମ୍ରାଟ, ଏଇ ଅନ୍ଧାରୀ ଶାସନର ରାତି ପାହିଆସୁଛି । ଏହି ଦେଶର କୋଟି କୋଟି ଜନତା ଆଗେଇ ଆସୁଛନ୍ତି ହସ୍ତିନାର ସିଂହଦ୍ୱାର ପାଖକୁ । ଏ ଅର୍ଗଳି ଭାଙ୍ଗିଯିବ । ଭାଙ୍ଗିଯିବ ଲୌହକବାଟ । ଭାଙ୍ଗିଯିବ ଏହି ସ୍ୱାର୍ଥାନ୍ୱେଷୀ ରାଜ ଆଭିଜାତ୍ୟ । ଆସନ୍ତୁ, ବର୍ତ୍ତମାନ ବି ସମୟ ଅଛି, ଆସନ୍ତୁ । ଓହ୍ଲାଇ ଆସନ୍ତୁ ସିଂହାସନରୁ ।

ବଜ୍ରବାହୁ ।। ବ୍ରହ୍ମଦତ୍ତ ! ତୁମ୍ଭଙ୍କୁ ମୁଁ ପାଞ୍ଚସହସ୍ର ହସ୍ତୀ, ଅଶ୍ୱ ଦେବି.... ଗ୍ରାମ ଦାନ ଦେବି... ଗବାଦି ପଶୁ ଦେବି... ଚାରଣ ଭୂମି ଦେବି... ସୁବର୍ଣ୍ଣ ମୋହର ଦେବି... ପୁରସ୍କାର ଦେବି... ସମ୍ମାନ ଦେବି.... ଏ ଆନ୍ଦୋଳନ ବନ୍ଦ କର ! ବନ୍ଦ କର !

ବ୍ରହ୍ମଦତ୍ତ ।। ମୁଁ କିଛି ଚାହେଁନା । ମୋ ସ୍ୱାର୍ଥ ପାଇଁ ମୁଁ ଅର୍ଥ, ସମ୍ମାନ, ପୁରସ୍କାର, କିଛି ଚାହେଁନା... ମୋର ଆଖି ଖୋଲି ଯାଇଛି ।

ମୁଁ ଚାହେଁ ଏ ସ୍ୱେଚ୍ଛାଚାରୀ ଶାସନର ମୃତ୍ୟୁ ଓ ଭୋକିଲା ପଟୁଆରର ଜୟ ହେଉ ।

ବଜ୍ରବାହୁ ॥ ଠିକ୍ ଅଛି ! ମୁଁ ମୃତ୍ୟୁଲୋକକୁ ଗମନ କରିବି ।

ବ୍ରହ୍ମଦତ୍ତ ॥ ଶୀଘ୍ର ଯା'ନ୍ତୁ ! ଶୀଘ୍ର ! ବର୍ତ୍ତମାନ ବି ସମୟ ଅଛି... ସମୟ ଅଛି । ହୃଦୟ ଓ ବୁଦ୍ଧି ଶେଷ ହୋଇଗଲା ପରେ ଏ ରାଜ୍ୟରେ ଆଉ କେହି ମନୁଷ୍ୟ ନାହାନ୍ତି... ସମସ୍ତେ ପଶୁ... ରାଜଧାନୀ ରାସ୍ତା ଏକ ଜଙ୍ଗଲ... ସେଇଠି ସିଂହ, ଗୟଳ, ବ୍ୟାଘ୍ର ଓ ସର୍ପମାନେ ଅଛନ୍ତି... ଦେଖ । ଏଇ ସୁବର୍ଣ୍ଣ ପ୍ରାସାଦ ଆଡ଼କୁ ମାଡ଼ି ଆସୁଛନ୍ତି । ତମକୁ ଟିକ୍ ଟିକ୍ କରି ଚିରି ପକାଇବେ... କ୍ଷୁଧାର୍ତ୍ତ ପଶୁମାନଙ୍କ ପାଇଁ ତୁମେ ହେବ ରାତ୍ରି ଶେଷର ଆହାର... ତମ ଦେହରେ ଅନେକ ଚର୍ବି ଅଛି ।

ବଜ୍ରବାହୁ ॥ ବ୍ରହ୍ମଦତ୍ତ !! (କଣ୍ଠ ତାଙ୍କର ଥରି ଉଠିଲା)

ବ୍ରହ୍ମଦତ୍ତ ॥ ଏ ରାଜଗାଦି ଛାଡ଼ିଦିଅ । ଆଦେଶ ଦିଅ ଯେ ତୁମ୍ଭେ ମୃତ ।

ବଜ୍ରବାହୁ ॥ (ତାଙ୍କ ଚକ୍ଷୁରେ ଅଶ୍ରୁ, ତାଙ୍କ କଣ୍ଠରେ କମ୍ପନ, ତାଙ୍କ ଶରୀରରେ ଯନ୍ତ୍ରଣା)

ବ୍ରହ୍ମଦତ୍ତ ॥ ଆସ ! ଓହ୍ଲାଇ ଆସ ସିଂହାସନ ଛାଡ଼ି । ହସ୍ତିନାରେ ଅନେକ ବୋଧିଦ୍ରୁମ ଅଛି ।

ବଜ୍ରବାହୁ ॥ ଅସମ୍ଭବ ! ମୁଁ ସନ୍ୟାସୀ ହୋଇ ପାରିବିନି ।

ବ୍ରହ୍ମଦତ୍ତ ॥ ତେବେ ଆଦେଶ ଦିଅ— ତୁମେ ମୃତ ।

ବଜ୍ରବାହୁ ॥ ଦେଉଛୁ । ଅପେକ୍ଷା କର ।

[କୌଣସି ଏକ ତାଳ ଯନ୍ତ୍ରରେ ସବୁ ଭାଙ୍ଗିଗଲା ପରି ଏକ ଦ୍ରୁତ ଲୟ]

ଆମ୍ଭେ... ରାଜା ବଜ୍ରବାହୁ.... ଏତଦ୍ୱାରା ଘୋଷଣା କରୁଅଛୁ ଯେ... ଆଜି ରାତ୍ରିର ଶେଷ ପ୍ରହରରେ... ନିଜକୁ ଏ ରାଜ୍ୟର ସବୁଠାରୁ ଘୃଣ୍ୟ ପାପୀ ହିସାବରେ ଅଭିଯୁକ୍ତ କଲୁ । ଆଗାମୀ ସକାଳର ସୂର୍ଯ୍ୟୋଦୟ ପୂର୍ବରୁ... ବିଶ୍ୱେଶ୍ୱର ପୁଷ୍କରିଣୀରେ ସ୍ନାନ ସମାପନ କରି ହସ୍ତିନାନଗରର ରାଜଦାଣ୍ଡରେ ଭ୍ରମଣ କରିବୁ ଏବଂ

ରାଜଧାନୀର ସବୁଠାରୁ ଜନାକୀର୍ଣ୍ଣ ଛକ ଉପରେ କୋଟି କୋଟି ବୁଭୁକ୍ଷୁ ଜନତାଙ୍କ ଆଗରେ ଶୂଳିଦଣ୍ଡ ପାଇବୁ ।

[ବଜ୍ରବାହୁ ସିଂହାସନ ଉପରୁ ଓହ୍ଲାଇ ଆସିଲେ । ଓହ୍ଲାଇ ଦେଲେ ମସ୍ତକରୁ ମୁକୁଟ । ରଖି ଦେଲେ ସିଂହାସନ ଉପରେ । ବାହୁ ତାଙ୍କର ପ୍ରସାରିତ ହେଲା । ମସ୍ତକ ଢଳି ପଡ଼ିଲା ଗୋଟିଏ ପଟକୁ]

ବ୍ରହ୍ମଦତ୍ତ ॥ ମୁଁ ସିଂହାସନ ଚାହେଁନା ସମ୍ରାଟ ! ମୁଁ ଚାହେଁ ମଣିଷ ଶାସକର ଅତ୍ୟାଚାରର ଶିକାର ହୋଇ ଅନାହାରରେ ନ ମରୁ । ଏ ତରବାରି ଆଉ ମୋର ଦରକାର ନାହିଁ । ତାକୁ ମୁଁ ଆପଣଙ୍କ ମୁକୁଟ ପାଖରେ ରଖି ଦେଉଛି । (ତରବାରି ରଖିଲେ ଏବଂ ସମ୍ରାଟ ଓହ୍ଲାଇ ଆସୁଥିଲେ ଗୋଟିଏ ପାହାଚ—ବ୍ରହ୍ମଦତ୍ତ ଚଢୁଥିଲେ—ଏପରି ଅବସ୍ଥାରେ ଅଟକି ଯାଇ)

ଏଇ ଦେଖ ସମ୍ରାଟ ! ପୂର୍ବ ଦିଗନ୍ତ ରକ୍ତିମ । ସକାଳର ଆଲୋକ କିପରି ସିନ୍ଦୂରା ହୋଇ ଫାଟି ପଡୁଛି — ସତେ ଯେମିତି ଏକ ନୂତନ ସୃଷ୍ଟିର ନୂତନ ସୂର୍ଯ୍ୟ !

[ଦିଗନ୍ତରେ ଏକ ସୂର୍ଯ୍ୟୋଦୟ । ଆଉ ସବୁ ଆଲୋକ ବନ୍ଦ । ଟାବ୍ଲ୍ୟୁଟି କ୍ରମଶଃ ସିଲହଟରେ ପରିଣତ ହେବ । ମୃତ୍ୟୁ ସମୟର ରାଷ୍ଟ୍ରୀୟ ସମ୍ମାନସୂଚକ ଟ୍ରମ୍ପେଟ୍ ଓ ସମବେତ କଣ୍ଠରେ କରୁଣ ଆଳାପର ବ୍ୟବହାର ମଧ୍ୟ କରାଯାଇପାରେ । ସଙ୍ଗୀତ ଓ ଆଲୋକ କ୍ରମଶଃ ଲିଭିଯିବ । କିନ୍ତୁ ସମ୍ରାଟ ଓ ବ୍ରହ୍ମଦତ୍ତ ସେମିତି ଠିଆ ହୋଇଥିବେ ଏକ ସମୟହୀନ ପ୍ରତିଛବି ଭଳି]



## ଏଇ ଲେଖକଙ୍କର ଅନ୍ୟାନ୍ୟ ନାଟକ :

ମୁଁ ଆମ୍ଭେ ଓ ଆମ୍ଭେମାନେ
ଜଣେ ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ସଂପର୍କରେ
ବିନ୍ଦୁ ଓ ବଳୟ
ତିମିର ତୃଷ୍ଣା
ଦୁର୍ଘଟଣାବଶତଃ
ଧୃତରାଷ୍ଟ୍ରର ଆଖି
ଆତ୍ମଲିପି
ଗୁଣ୍ଡା
ଉଡ଼ନ୍ତା ପାହାଡ଼ର ଦର୍ଜା (ଚାରୋଟି ଛୋଟ ନାଟକ)
ଅପ୍ରୀତିକର ନାଟକ (ପାଞ୍ଚୋଟି ଛୋଟ ନାଟକ)
କମଳପୁର ଡାକଘର
ମହାନାଟକ
ଶେଷ ପାହାଚ
ଅପହଂଚ (ଯନ୍ତ୍ରସ୍ଥ)
ପ୍ରେମ ଗଳ୍ପ (ଯନ୍ତ୍ରସ୍ଥ)
ଅନ୍ଧନଦୀର ସୁଅ (ଯନ୍ତ୍ରସ୍ଥ)
ପକା କମ୍ବଳ ପୋତ ଛତା (ଯନ୍ତ୍ରସ୍ଥ)
ମୁକ୍ତି ମଣ୍ଡପ (ଯନ୍ତ୍ରସ୍ଥ)

